# ବିଶ୍ୱର ପ୍ରେମକଥା

ନାରାୟଣ ସାହୁ

ISBN 81 - 88630 - 02 - 0

ପ୍ରକାଶକ :
କିତାବ ଭବନ
୫୭, ଶହୀଦନଗର
ଭୁବନେଶ୍ୱର - ୭
ଫୋନ୍ : ୦୬୭୪ - ୫୪୪୭୪୨

ମୁଦ୍ରଣ :
କ୍ରିଏଟିଭ ଅଫସେଟ୍
ଏନ୍-୬/୪୨୮,
ଆଇ.ଆର.ସି. ଭିଲେଜ
ନୂଆପଲ୍ଲୀ, ଭୁବନେଶ୍ୱର - ୧୫
ଫୋନ୍ : ୦୬୭୪ - ୫୫୬୧୦୭

ପ୍ରଚ୍ଛଦ :
ଯୁଗଶ୍ରୀ ବିଶୋଇ

ପ୍ରଥମ ପ୍ରକାଶ :
୨୦୦୨

ମୂଲ୍ୟ :
ଟ. ୪୦.୦୦
(ଚାଳିଶ ଟଙ୍କା ମାତ୍ର)

# LOVE STORIES OF WORLD

Narayan Sahoo

ISBN 81 - 88630 - 02 - 0

**Publisher :**
Kitab Bhavan
57, Sahidnagar,
Bhubaneswar - 7
Phone : 0674-544742

**Printer :**
Creative Offset
N-6/428,
IRC Village, Nayapalli,
Bhubaneswar - 15
Phone : 0674-556107

**Cover Design :**
Yugashree Bisoi

**First Edition :**
2002

**Price :**
Rs. 40/-
(Rupees Forty only)

ମୋ ପରିକଳ୍ପିତ ନାଟକର ନାୟକ

ମୋର ବନ୍ଧୁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର

ଓଡ଼ିଆ ବିଭାଗର

ପ୍ରଫେସର ଡଃ ଦେବୀପ୍ରସନ୍ନ ପଟ୍ଟନାୟକ

ଏବଂ

ତାଙ୍କ ପତ୍ନୀଙ୍କ

ହାତରେ.........।

# ପ୍ରେମବନ୍ଧ

କେଉଁ ଅନାଦି କାଳରୁ ପ୍ରେମର ମନ୍ଦାକିନୀ ପ୍ରବାହିତ ହୋଇଆସୁଛି। ପ୍ରେମ ଏକ ସାରସ୍ୱତ ପ୍ରବାହ। ଏହା ମାନେନା ଜାତି-ଧର୍ମ-ବର୍ଣ୍ଣ ଆଉ ସମାଜ। ଏହା କେବଳ ପୁରୁଷ ଆଉ ନାରୀର ଆକର୍ଷଣ ଭିତରେ ସୀମିତ ନୁହେଁ ବା ଏହା କେବଳ ଦେହଜ କାମନା ନୁହେଁ......।

ପ୍ରେମ ହେଉଛି ଏକ ଆବଶ୍ୟକତା। ଏହା ସକଳ ଜୀବକୁ ନିଜର ପଣତକାନିରେ ବାନ୍ଧି ରଖିଥାଏ। ପ୍ରାଣୀ ମାତ୍ରେ ହିଁ ପ୍ରେମବଶ ହୁଅନ୍ତି। ପ୍ରେମ ଏକ ସ୍ପନ୍ଦନ। ଉନ୍ନତିର ଏହା ମଧ୍ୟ ଏକ ସୋପାନ।

ପ୍ରେମ ଏକ ତରଙ୍ଗ। ସମୟର ସୋପାନରେ ଏହା କେତେବେଳେ ହୁଏ ତରଙ୍ଗାୟିତ। ବାଲ୍ୟବୃଦ୍ଧ ସମସ୍ତେ ଏହାର ଅଧୀନ। ପ୍ରେମ ଭିତରେ ଥାଏ ଅମାପ ଶକ୍ତି। କେତେବେଳେ ଏହା ସୃଷ୍ଟି ଦିଗରେ ପ୍ରବାହିତ ହୁଏତ, ପୁଣି କେତେବେଳେ ଧ୍ୱଂସର ଅଭିସାର ରଚନା କରିଥାଏ।

ପ୍ରେମ ଏକ ଉଦ୍‌ବେଳନ....ଏକ ପ୍ଲାବନ....। ଏହା ମାନେନା ସୀମାସରହଦ। ସାଧାରଣ ଶ୍ରମଜୀବୀଠାରୁ ଆରମ୍ଭ କରି ସର୍ବୋଚ୍ଚ ଆସନରେ ଅଧିଷ୍ଠିତ ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ ପର୍ଯ୍ୟନ୍ତ, କେହି ଏହାର ଧାରରୁ ମୁକ୍ତି ପାଇପାରି ନାହାନ୍ତି।

ବିଶ୍ୱର ବଡ଼ ବଡ଼ ନେତାମାନଙ୍କର ରଙ୍ଗିନ ଜୀବନର ଅଧିନ୍ୟାସ ପଢ଼ିବାର ସୁଯୋଗ ପାଇଥିଲି। ସେହି ତରଙ୍ଗାୟିତ ଉପପାଦ୍ୟଗୁଡ଼ିକରେ ଆଉ ଟିକିଏ ରୋମାଞ୍ଚ ଭରିଦେବା ପାଇଁ ଦିନେ ହଠାତ୍ ଧରିବସିଲି କଲମ। ଜନ୍ମଲାଭ କଲା ପ୍ରେମ କଥାର ସିରିଜ୍। ଏହି ଧାରାବାହିକ ପ୍ରେମ କଥାକୁ ପାଠକ ସହିତ ପରିଚିତ କରାଇଥିଲେ ୧୯୯୭ରୁ ୨୦୦୦ ମସିହା ମଧ୍ୟରେ କଲମ, ଉତ୍କଳିକା, ଆଲୋଡ଼ନ ଇତ୍ୟାଦି ପତ୍ରପତ୍ରିକା। ଏଇ ଅବସରରେ ମୁଁ ସଂପୃକ୍ତ ପତ୍ରିକାମାନଙ୍କର ସମ୍ପାଦକ ଜନ୍ମେଜୟ ପ୍ରଧାନ, କେ.ଏମ୍. ରାଓ, ପ୍ରଭୁକଲ୍ୟାଣ ମହାପାତ୍ରଙ୍କୁ କୃତଜ୍ଞତା ଜଣାଉଛି।

ମୋର ଏ ଉଦ୍ୟମକୁ ସାକାର ରୂପ ଦେବାକୁ ବନ୍ଧୁ ବିନୋଦବିହାରୀ ବିଶୋଇ ଆଗେଇ ଆସିଥିବାରୁ, ତାଙ୍କୁ ମଧ୍ୟ ଧନ୍ୟବାଦ ଜଣାଉଛି।

ଲେଖକ......

# ସୂଚୀପତ୍ର

# ପ୍ରେମର ପରିଭାଷା

ପ୍ରେମ ଏକ ପାର୍ବଣ.... ପ୍ରେମ ଏକ ଉପାସନା.... ପ୍ରେମ ଏକ ନିସର୍ଗ ନିରାକନା.... ସୌଖିନ ସଂସାରରେ ଜୀବନଧାରଣ ପାଇଁ ପ୍ରେମ ଏକ ଆବଶ୍ୟକୀୟ ଅବଲମ୍ବନ। ମାନବର ସକଳ କ୍ରିୟାଶକ୍ତି ଉପରେ ପ୍ରଭାବ ବିସ୍ତାର କରିଥାଏ 'ପ୍ରେମ'। ମନ ଶରୀର ଏବଂ ଆତ୍ମା ସହିତ ଏହାର ସମ୍ପର୍କ ଅବିଚ୍ଛିନ୍ନ। ପ୍ରେମର ପବିତ୍ର ବେଦି ଉପରେ ଜାଗତିକ କାମନାବାସନା ନିଜକୁ ପରଖିବାର ସୁଯୋଗ ପାଇଥାଏ। ତେଣୁ ଏଠାରେ ପ୍ରେମର ରଙ୍ଗ ଆଧ୍ୟାତ୍ମିକ ହୋଇପାରେ, ମାନସିକ ହୋଇପାରେ.... କିମ୍ବା ହୋଇପାରେ ଶାରୀରିକ। ପ୍ରେମରେ ଏକ ଆକର୍ଷଣୀ ଶକ୍ତି ଥାଏ, ଯାହା ବ୍ୟକ୍ତିକୁ ଅଗ୍ରସର ହେବା ପାଇଁ ପ୍ରେରଣା ଯୋଗାଏ। ପ୍ରେମର ଦ୍ୱୈତ ସତ୍ତା ଭାବରେ ଆମେ ଦେଖିବାକୁ ପାଉ ଅନେକ ରୂପକୁ ଯଥା- ପୁରୁଷ-ପ୍ରକୃତି, ଈଶ୍ୱର-ମାୟା, ଡିଉକ୍-ନେଚର (ଲାଟିନ), ୟିଙ୍ଗ-ୟାଙ୍ଗ (ଚୀନ), ଆଦାମ-ଇଭ୍‌ଙ୍କୁ।

> ଯେଉଁଦିନ ୨୩ ବର୍ଷିଆ ମାରଟା ବିବାହ କରିଥିଲେ ତାଙ୍କଠାରୁ ୫୩ ବର୍ଷ ବଡ଼ ପାବ୍ଲୋ କାସାଲ୍‌ସଙ୍କୁ ସେଦିନ ବି ଝଡ଼ ଉଠିଥିଲା। ବିବାହ ଦିନ ପାବ୍ଲୋ ହସି ହସି କହିଥିଲେ, ଆଜି ମୋ ଜୀବନର ସର୍ବୋତ୍ତମ ଖୁସିର ଦିବସ। ମାରଟାଙ୍କୁ ପଚରାଯିବାରୁ ସେ କହିଥିଲେ, ପାବ୍ଲୋଙ୍କ ଛଡ଼ା ସେ ଅନ୍ୟ କାହାକୁ ଦେଖିପାରୁ ନାହାନ୍ତି। ତାଙ୍କ ଜୀବନ ହିଁ କେବଳ ପାବ୍ଲୋମୟ।

ବିଶ୍ୱ ଇତିହାସରେ ପ୍ରେମର ଅନେକ ଜ୍ୱଳନ୍ତ ଦୃଷ୍ଟାନ୍ତ ରହିଛି। ପ୍ରେମ ପାହାଡ଼କୁ ତରଳାଇଛି, ସାଗରକୁ ଲଙ୍ଘନ କରାଇଛି। ଏହାର ସୀମା ନାହିଁ କି ପରିସୀମା ମଧ୍ୟ ନାହିଁ। ଏହା ବଗିଚାରେ ଫଳେନା କିମ୍ବା ବଜାରରେ ମିଳେନା। ରାଜାଠାରୁ ରଙ୍କ ପର୍ଯ୍ୟନ୍ତ ସମସ୍ତେ ଏହାର ଅଧୀନ। ଏହା ନିର୍ଦ୍ଦିଷ୍ଟ ସମୟରେ ଆସେ। ଏହା ଏକ ରଙ୍ଗହୀନ, ଗନ୍ଧହୀନ ଅନନ୍ୟ ଅନୁଭବ। ଆତ୍ମତ୍ୟାଗର ଉଜ୍ଜ୍ୱଳ ଦୃଷ୍ଟାନ୍ତରେ ପ୍ରେମର ଗ୍ରନ୍ଥାଗାର ଗରିମାମୟ। କେବଳ

ସେଥିପାଇଁ ଆଜି ପର୍ଯ୍ୟନ୍ତ ସ୍ମୃତିର ସିଲଟରେ ଏବେବି ସାଇତା ହୋଇ ରହିଛନ୍ତି- ଲୈଲା-ମଜ୍‌ନୁ, ହୀର-ରଂଝା, ସୋହନି-ମହୀୱାଲ୍, ଶଶି-ପୁନୁ, ଶିରିନ୍-ଫର୍‌ହାଦ୍ ଏବଂ କେଦାର-ଗୌରୀ ।

ପ୍ରେମ ମଣିଷର ହୃଦୟକୁ ମହମଭଳି ତରଳାଇ ଦିଏ। ଏହା ବାଧା ବନ୍ଧନ ମାନେନା, ମାନେନା ପରିବାର ଜାତି ବର୍ଗ ସମାଜ। ପ୍ରବାହିତ ହେବା ଏହାର ଧର୍ମ।

ସତରେ ପ୍ରେମର ଶକ୍ତି ଅମାପ । ସେ ଛୋଟ ବଡ଼, ଅମୀର୍ ଗରିବ କିଛି ମାନେନା। ବୟସ ଏଠି ଆପେ ଆପେ ପଛକୁ ଘୁଞ୍ଚିଯାଏ। ମନରେ ଯୁବତ୍ୱର ଉନ୍ମାଦନା ଆସେ। ଯେଉଁଦିନ ୨୩ ବର୍ଷିଆ ମାରଟା ବିବାହ କରିଥିଲେ ତାଙ୍କଠାରୁ ୫୩ ବର୍ଷ ବଡ଼ ପାବ୍ଲୋ କାସାଲ୍‌ସଙ୍କୁ ସେଦିନ ବି ଝଡ଼ ଉଠିଥିଲା। ବିବାହ ଦିନ ପାବ୍ଲୋ ହସି ହସି କହିଥିଲେ, ଆଜି ମୋ ଜୀବନର ସର୍ବୋତ୍ତମ ଖୁସିର ଦିବସ। ମାରଟାଙ୍କୁ ପଚରାଯିବାରୁ ସେ କହିଥିଲେ, ପାବ୍ଲୋଙ୍କ ଛଡ଼ା ସେ ଅନ୍ୟ କାହାକୁ ଦେଖିପାରୁ ନାହାନ୍ତି। ତାଙ୍କ ଜୀବନ ହିଁ କେବଳ ପାବ୍ଲୋମୟ। ଦୀର୍ଘ ଦୁଇ ଦଶନ୍ଧି ପର୍ଯ୍ୟନ୍ତ ସେମାନଙ୍କ ଦାମ୍ପତ୍ୟ ଜୀବନ ଅତୁଟ ରହିପାରିଥିଲା। ୯୩ ବର୍ଷୀୟ ଶିଳ୍ପୀ ପାବ୍ଲୋ ମୃତ୍ୟୁ ପୂର୍ବରୁ କହିଥିଲେ, 'ମୁଁ ପ୍ରକୃତରେ ବହୁତ ଖୁସୀ। ମାରଟା ହିଁ ମୋ ଜୀବନର ଏକ ଅନନ୍ୟ ଅନୁଭବ। ମାରଟାଙ୍କ ହୃଦୟ ମହାନ ହୋଇଥିବାରୁ ସେ ମୋତେ ଗ୍ରହଣ କରିପାରିଲେ। ମାରଟାଙ୍କ ପାଖରେ ଥିଲାବେଳେ ମୁଁ ନିଜକୁ ଖୁବ୍ ତରୁଣ ଭଳି ଅନୁଭବ କରେ।' ସତରେ ଏହି ଶିଳ୍ପୀ ଜଣକ ତରୁଣର ସ୍ୱପ୍ନରେ ବୁଡ଼ି ଯାଇଥିଲେ। ୯୩ ବର୍ଷୀୟ ଏଇ ଶିଳ୍ପୀ ଯେତେବେଳେ ନିୟୁୟର୍କରେ ୧୯୭୦ରେ ନିଜର ଜୟନ୍ତୀରେ ଅର୍କେଷ୍ଟ୍ରା ପରିବେଷଣ କରୁଥିଲେ, ସେତେବେଳେ ସେ ଖୁବ୍ ତରୁଣ ପ୍ରତୀୟମାନ ହେଉଥିଲେ। ଆଗେଇବାରେ ପ୍ରେମ ବିଶ୍ୱାସ କରେ। ଶୃଙ୍ଖଳ ଏହାକୁ ଆୟତ୍ତ କରିପାରିନି। ପ୍ରେମ ବୟସର ତାରତମ୍ୟ ଦେଖେନାହିଁ। ପୁରୁଷ-ନାରୀର ମିଳନ ଉପରେ ବିଶ୍ୱାସ ପ୍ରକଟ କରେ। ନାରୀ ପୁରୁଷର ପ୍ରେମକୁ ବିବାହର ମୋହର ଲଗାଇ ଆୟତ୍ତ କରିବାକୁ ଯେତେ ଚେଷ୍ଟା କଲେ ମଧ୍ୟ ଏହା ସବୁବେଳେ ମୁକ୍ତି ପ୍ରୟାସୀ। ବିବାହ ହେଉଛି ନାରୀ-ପୁରୁଷର ସଂପର୍କର ଏକ ଆଇନଗତ ବ୍ୟାଖ୍ୟା। ଉଭୟ ମଧ୍ୟରେ ଏହା ଏକ ସେତୁଭଳି କାର୍ଯ୍ୟ କରିଥାଏ।

କେତେବେଳେ କିଏ କାହା ପ୍ରେମରେ ପଡ଼ିବ, ତାହା କେହି କହିପାରିବେନି। ମାନବ ଶରୀରର ଏହା ଏକ ଶକ୍ତିଶାଳୀ ଆବେଗ, ଯାହା ଶରୀର ଏବଂ ମନକୁ ଏକାକାର କରିବାରେ ଆନନ୍ଦ ଲାଭ କରିଥାଏ। ପ୍ରେମ ସ୍ଥାନ-କାଳ-ପାତ୍ର, ଭୁଲାଇ ଦେଇଥାଏ। ବୟସ ଏଠି ଖର୍ବ ହୋଇଯାଏ। ଏଇ ଦେଖୁନାହାନ୍ତି, ମେରିଗିନି ଆଉ ଏମ୍. ରୋଲାଁଙ୍କ କଥା। ମେରିଗିନି ୧୭୫୪ରେ ଫ୍ରାନସ୍‌ର ଏକ ସମ୍ଭ୍ରାନ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେ। ଏଇ ଫରାସୀ କନ୍ୟା କଣକ ତାଙ୍କ ବାପାଙ୍କ ବନ୍ଧୁଙ୍କୁ ଭଲପାଇ ବସିଲେ। ଏଥିପାଇଁ କମ୍ ଝଡ଼ ତୋଫାନ ଉଠିନି। ମେରି କିନ୍ତୁ ନିଜ ଜିଦ୍‌ରେ ଅଟଳ। ରୋଲାଁ ହୁଅନ୍ତୁ ପଛକେ ବାପାଙ୍କ ବୟସର, ସେ ନିଶ୍ଚୟ ତାଙ୍କୁ ବିବାହ କରିବେ। ଏଥିପାଇଁ ସେ ପରିବାର, ପିତାମାତା ସମସ୍ତଙ୍କୁ ତ୍ୟାଗ କରିବାକୁ ପ୍ରସ୍ତୁତ। ନିଜ ଜୀବନଠାରୁ ଅଧିକ ଭଲପାଉଥିବା, ବାପା ଶେଷରେ ମେରିର ପ୍ରଧାନ ଶତ୍ରୁରେ ପରିଣତ ହୋଇଥିଲେ। ବାପାଙ୍କ ପରାମର୍ଶରେ ଫ୍ରାନ୍‌ସର ଆଇନ ମେରିଙ୍କୁ ଗିଲୋଟିନରେ ବସାଇବାର ଯୋଜନା କରିଥିଲେ ମଧ୍ୟ ମେରି ନିଜ ପ୍ରେମର ମଣିଷଟିକୁ ଛାଡ଼ି ପାରିନଥିଲେ। ଏହା ହିଁ ପ୍ରେମର ଶକ୍ତି।

ବିଶ୍ୱ ଇତିହାସରେ ଏହିପରି ଅଜସ୍ର ଉଦାହରଣ ରହିଛି। ଯେଉଁଠି ପ୍ରେମ ବୟସର ବାଡ଼କୁ ଭାଙ୍ଗି ମୁକ୍ତଭାବେ ଆଗେଇଯାଇଛି, ସମାଜର ବନ୍ଧନ ରୀତିନୀତି ସେଠି ତାକୁ ଅଟକାଇ ପାରିନି। ଏଇ ଦେଖୁନାନ୍ତି, ସାରା ମିଲ୍‌ସଙ୍କୁ। ଏହି ଅଭିନେତ୍ରୀ କଣକ ତାଙ୍କଠାରୁ ୨୦ ବର୍ଷ ଅଧିକ ବୟସର ନାଟ୍ୟକାର ରବର୍ଟ ବୋଲ୍‌ଟଙ୍କୁ ବିବାହ କରିଥିଲେ। ୩୫ ବର୍ଷୀୟା କାକେଲିନ ପୁଣି ବିବାହ କରିଥିଲେ ୮୫ ବର୍ଷର ବିଶ୍ୱବିଖ୍ୟାତ ଚିତ୍ରଶିଳ୍ପୀ ପାବ୍ଲୋ ପିକାସୋଙ୍କୁ। ୨୧ ବର୍ଷୀୟା ଅଭିନେତ୍ରୀ ସୋଫିଆ ଲରେନ ମଧ୍ୟ ବିବାହ କରିଥିଲେ ତାଙ୍କ ବୟସର ଦୁଇଗୁଣ ବୟସ୍କ କର୍ଲୋ ପୋଣ୍ଟିଙ୍କୁ। ବିଶ୍ୱବିଖ୍ୟାତ ନାଟ୍ୟକାର ୟୁଜିନ ଓ ନିଲ୍‌ଙ୍କ କନ୍ୟା ଉନା ପୁଣି ବିବାହ କରିଥିଲେ ତାଙ୍କଠାରୁ ୩୫ ବର୍ଷ ବଡ଼ ଚାର୍ଲିଚାପ୍‌ଲିନ୍‌ଙ୍କୁ। ବାସ୍ତବରେ ପ୍ରେମର ପାରାବାର ସବୁବେଳେ ତରଙ୍ଗାୟିତ। ତାହା କେବେ ଶିଥିଳ ନୁହେଁ କିମ୍ବା ନିସ୍ତରଙ୍ଗ ନୁହେଁ।

# କାମନାର ଦେବୀ କାଥେରାଇନ୍ (ଋଷ୍)

୧୭୨୯ ଏପ୍ରିଲ ୨୧ ତାରିଖରେ ଜର୍ମାନୀର ଏକ ରାଜ ପରିବାରରେ ଜନ୍ମଗ୍ରହଣ କରନ୍ତି କାଥେରାଇନ୍। ୧୬ ବର୍ଷ ବୟସରେ ତାଙ୍କର ବିବାହ ହୁଏ ପିଟରଙ୍କ ସହିତ, ଯେ କି ଋଷ ସିଂହାସନର ଉତ୍ତରାଧିକାରୀ ଥିଲେ। ଋଷ ସାମ୍ରାଜ୍ଞୀ ଏଲିଜାବେଥଙ୍କର ସେ ପୋଷ୍ୟପୁତ୍ର ଥିଲେ। କାଥେରାଇନ୍ ସୁନ୍ଦରୀ, ସ୍ନେହୀ ଥିଲାବେଳେ ପିଟର ଦୁର୍ବଳ, ବଦ୍‌ରାଗୀ ଏବଂ ଅସଭ୍ୟ ପ୍ରକୃତିର ଥିଲେ। କାଥେରାଇନଙ୍କ ପ୍ରତି ସେ ଆଦୌ ଦୃଷ୍ଟି ଦେଉନଥିଲେ। ଏପରିକି ବାସର ରାତିରେ ମଧ୍ୟ ସେ ତାଙ୍କ ପ୍ରତି ଆସକ୍ତ ନହୋଇ ନିଜର ଖେଳନା ସୈନିକମାନଙ୍କ ସହିତ ଖେଳୁଥିଲେ। ଏହା କାଥେରାଇନ୍‌ଙ୍କ ନାରୀତ୍ୱ ପ୍ରତି ଥିଲା ଏକ ଶକ୍ତ ଆଘାତ। ପିଟରଙ୍କ ପ୍ରତି ତାଙ୍କ ମନ ବିଷାକ୍ତ ହୋଇ ଉଠିଥିଲେ ମଧ୍ୟ ସେ ରାଜବଂଶଜ ଥିବାରୁ ଖୋଲାଖୋଲି କିଛି କହିପାରୁ ନଥିଲେ।

> କ୍ଷମତାର ଏବଂ ସମ୍ମାନର ଶୀର୍ଷ ସ୍ଥାନରେ ସେ ପହଞ୍ଚିଥିଲେ ମଧ୍ୟ ତାଙ୍କ ଭିତରେ ଥିଲା ଏକ ଅସମ୍ଭବ ଦୁର୍ବଳତା। ସେ ଦୁର୍ବଳତା ପ୍ରେମ ପାଇଁ...ପୁରୁଷ ପାଇଁ... ଆଉ ପାଶବ କାମନା ପାଇଁ...। ଋଷ ସାମ୍ରାଜ୍ୟର ଏହି ସର୍ବମୟକର୍ତ୍ତ୍ରୀଙ୍କ ଜୀବନ ଥିଲା ରୋମାଞ୍ଚକର ଓ ଘଟଣାବହୁଳ। ବିଶ୍ୱ ଇତିହାସରେ ଏକ ବହୁ ଚର୍ଚ୍ଚିତ ନାମ କାଥେରାଇନ୍ ....।

ଶାଶୁ ଏଲିଜାବେଥ୍ ଧୈର୍ଯ୍ୟର ସହିତ ପିଟରେ ଏବଂ କାଥେରାଇନ୍‌ଙ୍କ କାର୍ଯ୍ୟକଳାପକୁ ଲକ୍ଷ୍ୟ କରୁଥିଲେ। ଦୀର୍ଘ ସାତ ବର୍ଷ କାଥେରାଇନ୍ ନୀରବ ରହିଥିଲେ କେବଳ ଶାଶୁଙ୍କ ପାଇଁ। ଏଲିଜାବେଥ୍ ମଧ୍ୟ ହୃଦୟଙ୍ଗମ କରିପାରିଥିଲେ ଯେ ପିଟର ଋଷର ରାଜସିଂହାସନ ପାଇଁ ଏକ ଅନୁପଯୁକ୍ତ ବ୍ୟକ୍ତି। ତଥାପି ସିଂହାସନ ପାଇଁ ଉତ୍ତରାଧିକାରୀ ଦରକାର। ତେଣୁ ଶାଶୁ ଯେ କୌଣସି ଉପାୟରେ ଜଣେ ଉତ୍ତରାଧିକାରୀ ସୃଷ୍ଟି ପାଇଁ କାଥେରାଇନ୍‌ଙ୍କ ଉପରେ ଜୋର ଦେଇଥିଲେ। ଶାଶୁଙ୍କର ଉଦ୍ଦେଶ୍ୟ ଥିଲା, କାଥେରାଇନ୍ କିଛି ସମୟ ପାଇଁ ଜଣେ ଉପପତି ଗ୍ରହଣ କରୁ। ଶାଶୁ ନିଜର ଉଦ୍ଦେଶ୍ୟ ପୂରଣ ପାଇଁ କାଥେରାଇନ୍‌ଙ୍କ ବ୍ୟକ୍ତିଗତ

ସାହାଯ୍ୟକାରୀ (ଏ. ଡି. ସି.) ଭାବେ ଜଣେ ସୁନ୍ଦର ଯୁବକ ସରକିଅସ ସଲଟିକଫ୍‌ଙ୍କୁ ନିଯୁକ୍ତି ଦେଇଥିଲେ।

ଏଲିଜାବେଥ୍‌ଙ୍କ ପରାମର୍ଶରେ କାଥେରାଇନ୍ ବଲଟିକ ଉପସାଗର କୂଳକୁ ସ୍ୱାସ୍ଥ୍ୟ ପରିବର୍ତ୍ତନ ପାଇଁ ଗଲେ। ତାଙ୍କ ସହିତ ବହୁ ମହିଳା ପରିଚାରିକା ଏବଂ ସଲଟିକଫ୍ ଥିଲେ। ବସନ୍ତ ସମୟ। କୌଣସି ଏକ ପୂର୍ଣ୍ଣିମା ରାତି। କାଥେରାଇନ୍ ଏକାକୀତ୍ୱର ଯନ୍ତ୍ରଣାରୁ ମୁକ୍ତି ପାଇବା ପାଇଁ ନିଜ ମୁଖ୍ୟ ପରିଚାରିକାଙ୍କୁ କହିଥିଲେ ପାଖ ଘରର ଦରଜା ମୁକ୍ତ ରଖିବା ପାଇଁ। ଦରକାର ହେଲେ କାହାରିକୁ ସେ ଡାକିପାରିବେ, ପାଖ ଘରେ ରହୁଥିଲେ ସଲଟିକଫ୍। ଏଲିଜାବେଥ୍‌ଙ୍କ ପରାମର୍ଶ ଅନୁସାରେ ସବୁ କିଛି ପ୍ରସ୍ତୁତ ହୋଇଥିଲା। ହଠାତ୍ ପବନରେ କାଥେରାଇନଙ୍କ ବେଡ଼ରୁମ୍‌ର ମହମବତୀଟି ଲିଭିଗଲା। 'କେହି ଅଛି' ବୋଲି ଚିତ୍କାର କରିଉଠିଲେ କାଥେରାଇନ୍। ପାଖ ରୁମ୍‌ରୁ ମହମବତୀ ସହ ପ୍ରବେଶ କଲେ ସଲଟିକଫ୍। ବିଳମ୍ବିତ ରାତ୍ରି ପର୍ଯ୍ୟନ୍ତ ସେମାନେ ବାର୍ତ୍ତାଳାପ କରିଥିଲେ ଏବଂ ଶେଷରେ କାଥେରାଇନ ନିଜକୁ ସମର୍ପଣ କରିଥିଲେ ଏ.ଡି.ସି. ନିକଟରେ। କାଥେରାଇନଙ୍କ ହୃଦୟର ଶୂନ୍ୟସ୍ଥାନକୁ ପୂରଣ କରିଥିଲେ ସଲଟିକଫ୍। ଦୁଇଥର ଗର୍ଭବତୀ ହୋଇଥିଲେ ମଧ୍ୟ କାଥେରାଇନଙ୍କ ଗର୍ଭପାତ ହୋଇଯାଇଥିଲା। ତୃତୀୟଥର ଗର୍ଭବତୀ ହେଲାବେଳେ, ଏଲିଜାବେଥ ତାଙ୍କର ସମସ୍ତ ଯତ୍ନ ନେଇଥିଲେ। ଜନ୍ମଗ୍ରହଣ କରିଥିଲା ଶିଶୁ ସନ୍ତାନ ପଲ୍। ପିଟର ଭଲଭାବେ ଜାଣିଥିଲେ ଯେ ପଲ୍ ତାଙ୍କ ସନ୍ତାନ ନୁହେଁ, କିନ୍ତୁ ମା'ଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାର ସାହସ ତାଙ୍କର ନଥିଲା। ଇତ୍ୟବସରରେ ଏଲିଜାବେଥ ଆମ୍ବାସଡର ଭାବେ ସଲଟିକଫଙ୍କୁ ସୁଇଡେନ୍ ପଠାଇଦେଲେ।

ଖୁବ୍ ଭାଙ୍ଗି ପଡ଼ିଥିଲେ କାଥେରାଇନ। ପୁରୁଷ ଏବଂ ପ୍ରେମ ବିନା ସେ ନିଜକୁ ଆୟତ୍ତ କରି ପାରୁନଥିଲେ। ତତ୍‌କ୍ଷଣାତ୍ ପୋଲାଣ୍ଡ ରାଜବଂଶଜ କାଉଣ୍ଟ ଷ୍ଟାନିସ୍‌ଲାସ ପୋନିଏଟସ୍କିଙ୍କୁ ତାଙ୍କ ମନୋରଞ୍ଜନ ପାଇଁ ବ୍ୟବସ୍ଥା କରାଗଲା। ଦୀର୍ଘ ୫ ବର୍ଷ ସେମାନଙ୍କ ସମ୍ପର୍କ ରହିବା ପରେ ପିଟର ଜାଣି ପାରି ପୋନିଏଟ୍‌ସିଙ୍କୁ ଋଷରୁ ବିତାଡ଼ିତ କରିଦେଲେ। ଏଥର ଅବଶ୍ୟ କାଥେରାଇନ ବିରକ୍ତି ପ୍ରକାଶ କରିନଥିଲେ। ଦିନେ ଝରକା ଦେଇ ସେ ଜଣେ ମିଲିଟାରୀ ବ୍ୟକ୍ତିଙ୍କୁ ଦେଖି ଡକାଇ

ପଠାଇଲେ। ଋଷ ସୈନ୍ୟବାହିନୀର ଏହି ବ୍ୟକ୍ତି ଜଣକ ଲେଫ୍‌ଟନାଣ୍ଟ ଗ୍ରୀଗରୀ ଅରଲଫ୍। କାଥେରାଇନ ଏବଂ ଅରଲଫ୍‌ଙ୍କ ସମ୍ପର୍କ କ୍ରମଶଃ ଗାଢ଼ତର ହେବାକୁ ଲାଗିଲା। ଏଥିପାଇଁ କାଥେରାଇନଙ୍କୁ ବେଶ୍ କିଛି ଦାମ୍ ଦେବାକୁ ପଡ଼ିଥିଲା।

ରାଣୀ ଏଲିଜାବେଥ୍ ଦିନରାତି ମଦ ଭିତରେ ବୁଡ଼ି ରହୁଥିବାରୁ ତାଙ୍କ ଜୀବନର ଯବନିକା ପାଖେଇ ଆସିଥିଲା। ଋଷ ସିଂହାସନର ଉତ୍ତରାଧିକାରୀ ଭାବେ ପଲ୍‌ଙ୍କର ଘୋର ବିରୋଧୀ ଥିଲେ ସମସ୍ତେ। ତେଣୁ ପାଞ୍ଚବର୍ଷୀୟ ପଲ୍ ନାମକୁ ମାତ୍ର ସିଂହାସନରେ ବସିଲେ। ପ୍ରକୃତ ଶାସନ କଲେ କାଥେରାଇନ। ଅରଲଫଙ୍କ ଭ୍ରାତୃଗଣ ଏଥିରେ ତାଙ୍କୁ ବହୁତ ସାହାଯ୍ୟ କରିଥିଲେ। ୧୭୬୧ ଡିସେମ୍ବର ୨୫ରେ ଏଲିଜାବେଥ୍ ଶେଷ ନିଃଶ୍ୱାସ ତ୍ୟାଗ କଲେ। ସେତେବେଳକୁ କାଥେରାଇନ ଛଅ ମାସର ଗର୍ଭବତୀ। ପିଟର ନିଜକୁ ଋଷର ସମ୍ରାଟ ଏବଂ କାଥେରାଇନ ନିଜକୁ ସାମ୍ରାଜ୍ଞୀ ଭାବେ ଘୋଷଣା କଲେ। ପିଟରଙ୍କ ସିଂହାସନ ଆରୋହଣ ପରେ ପରେ ରାଜଧାନୀ ସେଣ୍ଟ ପିଟର୍ସବର୍ଗ ଠାରୁ ୧୨ ମାଇଲ ଦୂର ପିଟରହଫ୍ ପାଲେସରେ ରାଣୀ କାଥେରାଇନ ରହି ୧୭୬୨ ଏପ୍ରିଲ ୧୧ ତାରିଖରେ ଏକ ପୁତ୍ରସନ୍ତାନ ଆଲେକ୍‌ସିଙ୍କୁ ଜନ୍ମ ଦେଲେ। ପିଟର ଡେନମାର୍କ ଉପରେ ଆକ୍ରମଣ କରିବା ପାଇଁ ରାଜଧାନୀଠାରୁ ଦୂରରେ ରହୁଥିଲେ। ସେଠାରୁ ସେ ରାଣୀଙ୍କ ପାଖକୁ ଖବର ପଠାଇଲେ ଯେ ଜୁନ ୨୯ରେ ସେ ତାଙ୍କୁ ଏବଂ ପୁତ୍ରକୁ ଭେଟିବେ। କୌଣସି ପ୍ରକାରେ କାଥେରାଇନ ଖବର ପାଇଲେ ଯେ ପିଟର ତାଙ୍କୁ ଏବଂ ତାଙ୍କ ଶିଶୁ ପୁତ୍ରକୁ ହତ୍ୟା କରିବାକୁ ଆସୁଛନ୍ତି।

କାଥେରାଇନଙ୍କ ସମର୍ଥକମାନେ ସୈନ୍ୟବାହିନୀର ଗୁରୁତ୍ୱପୂର୍ଣ୍ଣ ପଦବୀମାନଙ୍କରେ ରହିଥିଲେ। ଇତି ମଧ୍ୟରେ କାଥେରାଇନ ମିଲିଟାରୀ ଜେନେରାଲ୍‌ଙ୍କୁ ହାତ କରିପାରିଥିଲେ। ଜୁନ ୨୯ ତାରିଖ ଦିନ ସମସ୍ତ ମିଲିଟାରୀ ଜେନେରାଲଙ୍କ ଗହଣରେ ରାଣୀ କାଥେରାଇନ ଚର୍ଚ୍ଚରେ ପହଞ୍ଚିଲେ। ସମସ୍ତ ପ୍ରକାର ବନ୍ଦୋବସ୍ତ ପୂର୍ବରୁ ସରିଥିଲା। ବିଶପ୍ ତାଙ୍କୁ ଋଷର ସାମ୍ରାଜ୍ଞୀ ବୋଲି ଘୋଷଣା କଲେ। ପିଟର ଏସବୁ କିଛି ଜାଣିନଥିଲେ। ସେ ପିଟରହଫ୍ ପାଲେସ୍‌ରେ ପହଞ୍ଚିବା କ୍ଷଣି ସୈନ୍ୟମାନେ ତାଙ୍କୁ ଏକ ପ୍ରକାର ନଜର ବନ୍ଦୀରେ ରଖିଲେ। ସେ ମଧ୍ୟ କାଥେରାଇନଙ୍କୁ ସାମ୍ରାଜ୍ଞୀ ଭାବେ ସ୍ୱୀକୃତି ଦେବାକୁ ବାଧ୍ୟ ହେଲେ। ପରେ

ଜୁଲାଇ ୬ରେ ପିଟରଙ୍କୁ ହତ୍ୟା କରାଯାଇଥିଲା । କାଥେରାଇନ୍‌ଙ୍କର ଅଖଣ୍ଡ ରାଜତ୍ୱ ଆରମ୍ଭ ହେଲା । ସେ ହେଲେ ଋଷ ସାମ୍ରାଜ୍ୟର ସର୍ବମୟ କର୍ତ୍ତ୍ରୀ । ଏଇଠି ଶେଷ ହେଲା କାଥେରାଇନଙ୍କ ପ୍ରେମର ପ୍ରଥମ ପର୍ଯ୍ୟାୟ ।

X X X X

ସତରେ ପ୍ରେମ ଥିଲା କାଥେରାଇନଙ୍କ ପାଇଁ ଏକ ମାନସିକ ଦୁର୍ବଳତା । ପୁରୁଷ ଏବଂ ପ୍ରେମ ଥିଲା ତାଙ୍କ ଜୀବନ ପିଆଲାର ଶ୍ରେଷ୍ଠ ପାନୀୟ । ଉପଭୋଗ ପାଇଁ ସେ ସାନ ବଡ଼ ବା ବୟସର ଭେଦ ଦେଖୁନଥିଲେ । ଜୀବନକୁ ପରିପୂର୍ଣ୍ଣ ଭାବରେ ସେ ଉପଭୋଗ କରି ଚାଲିଥିଲେ । ପ୍ରେମ ପଥରେ ଦେଖା ଯାଉଥିବା ସମସ୍ତ କଣ୍ଟକକୁ ସେ କୌଶଳର ସହିତ ଦୂର କରି ପାରୁଥିଲେ । ତାଙ୍କ ଜୀବନ ନାଟକର ପ୍ରଥମ କଣ୍ଟକ ଥିଲେ ତାଙ୍କ ସ୍ୱାମୀ ପିଟର । ତାଙ୍କର ହତ୍ୟା ପରେ ପରେ କାଥେରାଇନ ଭାବିଥିଲେ, ସେ ଏକ ସ୍ୱଚ୍ଛନ୍ଦ ଜୀବନ ଉପଭୋଗ କରିବେ । କିନ୍ତୁ ତାହା ହେଲା ନାହିଁ ।

ପିଟରଙ୍କ ମୃତ୍ୟୁରେ କାଥେରାଇନଙ୍କ ଜୀବନରେ ପ୍ରେମର ପ୍ରଥମ ପର୍ବ ଶେଷ ହୋଇଥିଲା ସତ, ହେଲେ ଏଇଠୁ ଆରମ୍ଭ ହେଲା ପ୍ରେମର ଅନ୍ତିମ ପର୍ବ, ଯାହା ଅତ୍ୟନ୍ତ ସଂଘର୍ଷ ପୂର୍ଣ୍ଣ ଥିଲା । କାଥେରାଇନଙ୍କ ସାମ୍ରାଜ୍ଞୀ ହେବା ପରେ ପରେ ତାଙ୍କର ପୂର୍ବତନ ପ୍ରେମିକମାନେ ଅସ୍ଥିର ହୋଇ ଉଠିଲେ, ନୂଆ ଅନୁଭୂତି ଏବଂ ପରିପୂର୍ଣ୍ଣ ଜୀବନର ଆଶାରେ । ହେଲେ ସେମାନଙ୍କର ସେ ଆଶା ଆଶାରେ ରହିଗଲା । ଏହି ପର୍ବର ପ୍ରଥମ ଶୀକାର ହେଲେ କାଥେରାଇନଙ୍କ ପ୍ରେମିକ ପୋନିଏତସ୍କି । ସେ ଆଶା କରିଥିଲେ କାଥେରାଇନଙ୍କର ବାହୁର ନିବିଡ଼ ବନ୍ଧନ । କିନ୍ତୁ ମିଳିଲା ତାଙ୍କୁ ଅନ୍ୟ କିଛି । ସେ ଭାବିଥିଲେ ସାମ୍ରାଜ୍ଞୀ ତାଙ୍କୁ ବିବାହ କରିବେ । ସେ ଭୁଲି ଯାଇଥିଲେ ଯେ କାଥେରାଇନ ତାଙ୍କ ବଦଳରେ ଆଉ ଜଣେ ପ୍ରେମିକ ଅର୍ଥାତ୍ ଗ୍ରୀଗରୀ ଅରଲଫ୍‌ଙ୍କୁ ଗ୍ରହଣ କରି ସାରିଥିଲେ ବୋଲି । କାଥେରାଇନ ପୋନିଏତସ୍କିଙ୍କୁ ଧୈର୍ଯ୍ୟ ଧରିବାକୁ କହିଲେ । କାଥେରାଇନଙ୍କ ପରାମର୍ଶରେ ସେ ପୋଲାଣ୍ଡର ଜଣେ ମହିଳାଙ୍କୁ ବିବାହ କରି ପୋଲାଣ୍ଡ ସିଂହାସନରେ ବସିଥିଲେ । ଏଇଠି ଶେଷ ହୋଇଥିଲା କାଥେରାଇନ ଏବଂ ପୋନିଏତସ୍କି ପ୍ରେମ ନାଟକର ଅନ୍ତିମ ପର୍ବ ।

ସାମ୍ରାଜ୍ଞୀ କାଥେରାଇନଙ୍କ, ଶ୍ରୀଗର୍ଗୀ ଅରଲଫ୍‌ଙ୍କ ସହିତ ବେଶ୍ ଖୁସିରେ କାଳଯାପନ କରିଥିଲେ। ଅରଲଫ୍‌ଙ୍କଠାରୁ ତାଙ୍କର ତିନୋଟି ସନ୍ତାନ ଜନ୍ମ ହୋଇଥିଲେ ମଧ୍ୟ, ଏହି ସମ୍ବାଦକୁ ଗୁପ୍ତ ରଖାଯାଇଥିଲା ବହୁ ବର୍ଷ ପର୍ଯ୍ୟନ୍ତ। କାରଣ ପିଟରଙ୍କ ମୃତ୍ୟୁ ପରେ ପରେ ଏହି ତିନୋଟିଯାକ ସନ୍ତାନ ଜନ୍ମ ହୋଇଥିଲେ। ଅରଲଫ୍ ଏବଂ ତାଙ୍କ ଭାଇମାନଙ୍କୁ କାଥେରାଇନ ବହୁ ସମ୍ପତ୍ତି ଦେଇଥିଲେ। ମାତ୍ର ଅରଲଫ୍ ଚାହିଁଥିଲେ କାଥେରାଇନ ତାଙ୍କୁ ବିବାହ କରିବେ। ଅରଲଫ୍‌ଙ୍କର ଗୁରୁତ୍ୱପୂର୍ଣ୍ଣ ଭୁଲ ହେଲା, ସେ କାଥେରାଇନଙ୍କ ପ୍ରେମିକ ହୋଇ ମଧ୍ୟ ରାଜପ୍ରସାଦରେ ଆହୁରି ଅନେକ ସୁନ୍ଦରୀମାନଙ୍କ ସହିତ ସମ୍ପର୍କ ରକ୍ଷା କରିଥିଲେ। ଏସବୁ ଘଟଣାରେ ମଧ୍ୟ କାଥେରାଇନ ନୀରବ ରହିଥିଲେ। ଅରଲଫ୍‌ଙ୍କର ଆଉ ଏକ ଭୁଲହେଲା ସାମ୍ରାଜ୍ଞୀଙ୍କର ଜଣେ ନିକଟ ସମ୍ପର୍କୀୟ ଜନେଭୋଭା ସହିତ ପ୍ରେମରେ ଲିପ୍ତ ହୋଇପଡ଼ିଲେ। ବାଧ୍ୟହୋଇ ତାଙ୍କୁ ତୁର୍କୀର ରାଷ୍ଟ୍ରଦୂତ କରି ପଠାଇବାକୁ କାଥେରାଇନ ସ୍ଥିର କଲେ।

ଅରଲଫ୍ ଚାଲିଯିବା ପରେ ପରେ ତାଙ୍କ ସ୍ଥାନରେ ନୂଆ ପ୍ରେମିକ ଭାବେ କାଥେରାଇନ ଗ୍ରହଣ କଲେ ଆଲେକକାଣ୍ଡାର ଭାସିଲସିକୋଭଙ୍କୁ। ଏ ଘଟଣାରେ ଅରଲଫ୍ ଅତ୍ୟନ୍ତ ଉତ୍‌କ୍ଷିପ୍ତ ହୋଇ ପିଟର୍ସବର୍ଗ ଫେରି ଆସିଲେ। ଏକ ରାଜପ୍ରାସାଦ ମଧ୍ୟରେ ତାଙ୍କୁ ନଜରବନ୍ଦୀ ଭାବେ ରଖାଗଲା। ବାଧ୍ୟ ହୋଇ ଅରଲଫ୍ ଛ'ହଜାର ସର୍ଫ ପନ୍ଦର ଲକ୍ଷ ରୁବଲ ବାର୍ଷିକ ପେନସନ ଗ୍ରହଣ କଲେ। ଶେଷରେ ଅରଲଫ୍ ପାଗଳ ହୋଇ ୪୩ ବର୍ଷ ବୟସରେ ମୃତ୍ୟୁବରଣ କଲେ। କାଥେରାଇନ ତାଙ୍କର ପ୍ରେମିକ ଭାସିଲସକୋଭଙ୍କୁ ମଧ୍ୟ ବହୁ ଅର୍ଥ ତଥା ସ୍ୱାଧୀନତା ପ୍ରଦାନ କରିଥିଲେ। ମାତ୍ର ୧୭୭୨ରେ କାଥେରାଇନଙ୍କୁ ଗାର୍ଡ ଅଫ ଅନର ପ୍ରଦାନ କରାଯାଉଥିବା ବେଳେ ସାମ୍ରାଜ୍ଞୀ ଆବିଷ୍କାର କରିଥିଲେ ଆଉ ଜଣେ ସୈନିକକୁ ଯେ କି ତାଙ୍କଠାରୁ ୧୧ ବର୍ଷ ସାନ ଥିଲେ। ବୟସର ଭେଦ ନ ବିଚାରି କାଥେରାଇନ ଭାସିଲସକୋଭଙ୍କୁ ପରିତ୍ୟାଗ କରି ଏହି ନୂତନ ସୈନିକ ପୋଟେମକିନଙ୍କୁ ତାଙ୍କ ସ୍ଥାନରେ ଗ୍ରହଣ କଲେ।

ପୋଟେମକିନଙ୍କ ସହିତ କାଥେରାଇନ ପ୍ରେମ ବେଶ୍ ସରଗରମ ହୋଇ ଉଠିଲା। ସ୍ନେହରେ କାଥେରାଇନ ଏହି ପ୍ରେମିକଙ୍କୁ ମୋ ଚିତା, ମୋ ପୁଷି, ମୋ

ସିଂହ, ମୋ ମୟୂର, ମୋ କଣ୍ଢେଇ ବୋଲି ସମ୍ବୋଧନ ମଧ୍ୟ କରୁଥିଲେ। ଅଧିକାଂଶ ସମୟ କାଥେରାଇନ ପ୍ରେମ ପତ୍ର ଲେଖିବାରେ କଟାଉଥିଲେ। କିନ୍ତୁ ଦେଖାଗଲା, ପୋଟେମକିନ ମଧ୍ୟ ରାଜପ୍ରାସାଦର ଅନ୍ୟ ନାରୀମାନଙ୍କ ସହିତ ସମ୍ପର୍କ ରକ୍ଷା କରୁଛନ୍ତି। ଏଥିରେ ରାଗିଗଲେ କାଥେରାଇନ ଏବଂ ପୋଟେମକିନ ବିଶ୍ୱାସରେ ବିଷ ମିଶେଇଛି ବୋଲି ଅଭିଯୋଗ କଲେ। ଏ ଘଟଣାରେ ପୋଟେମକିନ ମଧ୍ୟ ବିରକ୍ତି ପ୍ରକାଶ କଲେ। କାଥେରାଇନ ନିଜେ ପ୍ରେମ ସମ୍ପର୍କରେ ଯେତେ ନିଛକ ମନ୍ତବ୍ୟ ଦେଲେ ମଧ୍ୟ ପୋଟେମକିନ ତାହା ଗ୍ରହଣ କରି ନଥିଲେ। କାଥେରାଇନଙ୍କ ବ୍ୟବହାରରେ ସେ ଭୀଷଣ ଭାଙ୍ଗି ପଡ଼ିଥିଲେ। ଶେଷରେ ନିଜ ପଦବୀରୁ ଅବ୍ୟାହତି ଚାହିଁଲେ ଏବଂ ପୋଟେମକିନ ପ୍ରତିଶ୍ରୁତି ଦେଇଥିଲେ ଯେ ତାଙ୍କ ପାଇଁ ନୂଆ ପ୍ରେମିକଗଣଙ୍କୁ ଅନୁସନ୍ଧାନ କରି ପ୍ରଦାନ କରିବା ପାଇଁ। ଶେଷରେ ତାହା ହିଁ ହେଲା। ଦେଶର ନବୀନ ଯୁବକମାନଙ୍କୁ ମେଡିକାଲରେ ପରୀକ୍ଷା କରିବା ପରେ ପରେ କାଥେରାଇନଙ୍କ ଏ.ଡି.ସି. ଭାବରେ ନିଯୁକ୍ତି ଦିଆଯାଉଥିଲା। ସେମାନଙ୍କୁ ପରୀକ୍ଷା କରୁଥିଲେ କାଉଣ୍ଟେସ ବ୍ରୁଶ ଏବଂ ମାଡାମ ପ୍ରୋଟାସୋଭା। ଏହି ନବନିଯୁକ୍ତ ଏଡିସିଗଣ ଦିନରେ ସେମାନଙ୍କର କର୍ତ୍ତବ୍ୟ ଏବଂ ରାତିରେ ସାମ୍ରାଜ୍ଞୀଙ୍କର ସ୍ୱାମୀର କର୍ତ୍ତବ୍ୟ ପାଳନ କରୁଥିଲେ। ପୋଟେମକିନଙ୍କ ପରେ ୨୨ରୁ ୨୫ ବର୍ଷ ମଧ୍ୟରେ କାଥେରାଇନ ୧୫ ଜଣ ଏଡିସି ଗ୍ରହଣ କରିଥିଲେ। ପ୍ରତ୍ୟେକଙ୍କୁ ବିଦାୟ ବେଳେ ବହୁ ଧନସମ୍ପତ୍ତି ଦେଇଥିଲେ। ୬୦ ବର୍ଷ ବୟସରେ ମଧ୍ୟ କାଥେରାଇନ, ପୋଟେମକିନଙ୍କ ପୁତ୍ର ଯୁବୋଭ୍‌ଙ୍କୁ ଗ୍ରହଣ କରିଥିଲେ। ୬୭ ବର୍ଷ ବୟସରେ ବାଥରୁମରେ ଥିବା ଅବସ୍ଥାରେ ତାଙ୍କର ସେରିବ୍ରାଲ ଷ୍ଟ୍ରୋକ ଆରମ୍ଭ ହୋଇଥିଲା। ୩୦ ଘଣ୍ଟା ଅଚେତ ରହିବା ପରେ ୧୭୯୬ ନଭେମ୍ବର ୬ ତାରିଖରେ ମୃତ୍ୟୁବରଣ କରିଥିଲେ। ଏଇଠି ଶେଷ ହୋଇଥିଲା ସାମ୍ରାଜ୍ଞୀଙ୍କ ଜୀବନର ଶେଷ ଅଙ୍କ।



# ପ୍ରେମର ପିଆଲାରେ ଜାକେଲିନ୍.... (ଆମେରିକା)

ବିଶ୍ୱ ଇତିହାସରେ ଏକ ବହୁ ଚର୍ଚ୍ଚିତ ନାମ ହେଉଛି ଜାକେଲିନ୍, ଯିଏ କି ଜୀବନକୁ ଉପଭୋଗ କରିବାରେ ରେକର୍ଡ ସୃଷ୍ଟି କରିଛନ୍ତି। ପ୍ରାଚୁର୍ଯ୍ୟକୁ ଧରି ରଖିବା ପାଇଁ ସେ ସବୁକିଛି କରିବାକୁ ପ୍ରସ୍ତୁତ। ଜାକେଲିନ୍‌ଙ୍କ ସଂକ୍ଷିପ୍ତ ନାମ ଥିଲା ଜାକି। ସେ ଏକ ବିଡ଼ମ୍ବିତ ପରିବାର ମଧ୍ୟରୁ ଆସିଥିଲେ। ଜାକିଙ୍କ ବାପା ଜନ ବର୍ଣ୍ଣେ। ବୋଭିଅର ଜନ୍ମରୁ ଧନୀ ଥିଲେ କିନ୍ତୁ ମା' ଜାନେଟ୍ ଲି ଏକ ସାଧାରଣ ପରିବାରରୁ ଆସିଥିଲେ। ଜାକିଙ୍କ ପିତାମାତାଙ୍କ ମଧ୍ୟରେ ଉତ୍ତମ ସମ୍ପର୍କ ଥିଲା। କିଛି ବର୍ଷ ପରେ ଜନ ଏବଂ ଜାନେଟ ପରସ୍ପର ଠାରୁ ପୃଥକ୍ ହୋଇଯାଇଥିଲେ। ଜାନେଟ ପୁଣି ଥରେ ବିବାହ କରିଥିଲେ ହଗ୍ ଡଡ୍‌ଲି ଅସିନକ୍ଲସଙ୍କୁ। ଜାନେଟଙ୍କର ଦୁଇ ଝିଅ ଜାକି ଏବଂ ଲି ମଧ୍ୟ ମା'ଙ୍କ ସହିତ ଦ୍ୱିତୀୟ ପିତାଙ୍କ ପାଖରେ ରହିଲେ। ଅସିନକ୍ଲସ ଉଭୟ ଝିଅଙ୍କୁ ଖୁବ୍ ଆଡ଼ମ୍ବରରେ ପାଳିଥିଲେ। ସେହିଦିନ ଠାରୁ ଜାକିଙ୍କ ମନ ଭିତରେ ଏକ ଧାରଣା ସ୍ଥାନ ନେଇଥିଲା ଅର୍ଥାତ୍ ସେ ଏକ ଧନୀ ବ୍ୟକ୍ତିଙ୍କୁ ବିବାହ କରିବେ, ଯିଏ କି କୌଣସି ବିଷୟରେ ଖର୍ଚ୍ଚ କରିବାକୁ ମନା କରିବେନି।

> **ବିଚିତ୍ର ମହକର ଦେଶ ଆମେରିକା। ପ୍ରେମ ଆଉ ସତି ନେଇ ଖେଳ ଖେଳିବା ଏଠିକା ନମ୍ବରଷାନ ନାରୀମାନଙ୍କର ଏକ ଅଦ୍ଭୁତ ସଉକ। ପ୍ରେମ ଏଠି ପଣ୍ୟ ସତ ହେଲେ ପ୍ରେମିକ ପ୍ରେମିକାମାନେ ବେଳେବେଳେ ଇତିହାସର ଚରିତ୍ର ହୋଇଯାଆନ୍ତି। ଏମିତି ଏକ ନାରୀ ହେଉଛନ୍ତି ଆମେରିକାର ସ୍ୱର୍ଗତଃ ରାଷ୍ଟ୍ରପତି କେନେଡ଼ିଙ୍କର ପତ୍ନୀ ଜାକେଲିନ, ଯାହାଙ୍କ ପାଇଁ ପ୍ରେମ ଏବଂ ସତି ହେଉଛି ସ୍ୱର୍ଗ...ବୟସର ଉତ୍ତୀର୍ଣ୍ଣ ପାହାଚରେ ପାଦ ଦେଇ ମଧ୍ୟ ସେ ବସନ୍ତର ପୂଜାରିଣୀ.....।।**

ଜାକିଙ୍କ ଜୀବନରେ ପ୍ରଥମେ ଆସନ୍ତି ହନ୍ ହଷ୍ଟେଡ୍। ସେମାନଙ୍କ ବିବାହ ଏକରକମ ସ୍ଥିର ହୋଇଯାଇଥିଲା କହିଲେ ଚଳେ। ମାତ୍ର ହଠାତ୍ ଧସେଇ ପଶି ଆସନ୍ତି ଜନ୍ ଏଫ୍ କେନେଡ଼ି (ଜାକ୍)। ଉଭୟଙ୍କ ମଧ୍ୟରେ ସମ୍ପର୍କ ଗାଢତର

ହୁଏ। ହଷ୍ଟେଡ଼ଙ୍କୁ ମୁଦ୍ରିକା ଫେରାଇ ଦିଅନ୍ତି ଜାକି। ୧୯୫୩ ସେପ୍ଟେମ୍ବର ୧୨ ତାରିଖରେ ଜାକ୍ ଏବଂ ଜାକିଙ୍କର ବିବାହ ମହା ଆଡ଼ମ୍ବରରେ ସମାପନ ହୁଏ। ସେତେବେଳକୁ ଉଭୟଙ୍କ ବୟସ ୩୬ ଏବଂ ୨୪ ବର୍ଷ। ଜାକେଲିନ ଜୀବନକୁ ଉପଭୋଗ କରିଚାଲିଥିଲେ। ସେ କ୍ଷମତା ଲୋଭୀ ଥିଲେ, ମାତ୍ର ରାଜନୀତି ଭିତରେ ପଶିବାକୁ ଚାହୁଁ ନଥିଲେ। ୧୯୬୦ରେ ଜନ କେନେଡ଼ି ପ୍ରେସିଡେଣ୍ଟ ଭାବେ ନିର୍ବାଚିତ ହେଲେ। କେନେଡ଼ି ପରିବାର ଖୁସିରେ ମସ୍‌ଗୁଲ ଥିଲାବେଳେ ଜାକିଙ୍କର ଆଖିପତା ଓଦା ହୋଇ ଆସୁଥିଲା। ଏ ଅଯାଚିତ ଲୁହର କାରଣ ସମ୍ପର୍କରେ ସେ କହିଥିଲେ - "ଆମର ବ୍ୟକ୍ତିଗତ ଜୀବନ ଏଇଠୁ ଶେଷ ହୋଇଗଲା। ଆମର ସ୍ୱାଧୀନତା ମଧ୍ୟ ସୀମିତ ହୋଇଯିବ। ଏଣିକି ଆମେ ସର୍ବସାଧାରଣଙ୍କ ସମ୍ପତ୍ତିରେ ପରିଣତ ହୋଇଯିବୁ। ୩୧ ବର୍ଷ ବୟସରେ ଏସବୁ ଭୀଷଣ ଯନ୍ତ୍ରଣା ଦାୟକ, କାରଣ ଏହି ସମୟ, ହେଉଛି ମୋ ପାଇଁ ଉପଭୋଗର ସମୟ।"

ନିର୍ବାଚନରେ ବ୍ୟସ୍ତ ଥିବାରୁ ଜନ୍‌ଙ୍କର ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିଥିଲା। ତେଣୁ କିଛି ସମୟ ବାହାରେ କଟାଇବା ପାଇଁ ଜନ୍ ଫ୍ଲୋରିଡ଼ା ଯିବାପାଇଁ ସ୍ଥିର କଲେ। ଜାକିଙ୍କ ବାରଣ ସତ୍ତ୍ୱେ ମଧ୍ୟ ସେ ଚାଲିଗଲେ। ଏଥର ଜାକି ନିଜର ନିୟନ୍ତ୍ରଣ ହରାଇବାରୁ ତାଙ୍କୁ ଡାକ୍ତରଖାନାରେ ଭର୍ତ୍ତି ହେବାକୁ ପଡ଼ିଥିଲା। ଡାକ୍ତରମାନେ ୮ ମାସର ଏକ ଜୀବିତ ଶିଶୁଙ୍କୁ ତାଙ୍କ ଜରାୟୁରୁ ଉଦ୍ଧାର କରିଥିଲେ। ବାଧ୍ୟ ହୋଇ ଜନ୍ ଫ୍ଲୋରିଡ଼ାରୁ ଫେରିଆସିଥିଲେ। ଜାକି କିନ୍ତୁ ସବୁବେଳେ ସବୁପ୍ରକାର ନିୟନ୍ତ୍ରଣର ବାହାରେ ରହୁଥିଲେ। ଫାଷ୍ଟ ଲେଡି ହିସାବରେ ଜାକି ତାଙ୍କ କ୍ଷମତାର ଅପବ୍ୟବହାର କରୁଥିଲେ। ଆମେରିକା ଇତିହାସରେ ପ୍ରଥମ ଥର ପାଇଁ ସେ ନିଜ ପାଇଁ ଜଣେ ଡ୍ରେସ ଡିଜାଇନର୍‌କୁ ନିଯୁକ୍ତି ଦେଲେ। ହ୍ୱାଇଟ ହାଉସରେ ସକାଳ ଏବଂ ସନ୍ଧ୍ୟା ପାଇଁ ଦିନକୁ ଦୁଇଜଣ ହେୟାର ଡ୍ରେସରଙ୍କୁ ସେ ନିଯୁକ୍ତ କରିଥିଲେ। ବିଶ୍ୱର ଦାମୀ ଦାମୀ ସହରମାନଙ୍କରୁ ଜାକିଙ୍କ ପାଇଁ ଡ୍ରେସ ଆସୁଥିଲା। ହ୍ୱାଇଟ ହାଉସର ସାଜସଜାରେ ସେ ବହୁତ ଅର୍ଥ ବ୍ୟୟ କରିଥିଲେ। ପ୍ରତି ରୁମ ପାଇଁ ସେ ଅଢ଼େଇ ଲକ୍ଷ ଡଲାର ଖର୍ଚ୍ଚ କରିଥିଲେ। ଜନ୍ ଏ ବିଷୟରେ ତାଙ୍କୁ ବାରମ୍ବାର ସତର୍କ କରିଥିଲେ ମଧ୍ୟ ଜାକି ସେ ସବୁପ୍ରତି ଆଦୌ କର୍ଣ୍ଣପାତ କରୁନଥିଲେ। ଗୋଟିଏ ବର୍ଷ ମଧ୍ୟରେ ତାଙ୍କ ଖର୍ଚ୍ଚ ଏକ ଲକ୍ଷ ଡଲାରକୁ ଅତିକ୍ରମ

କରିଯାଇଥିଲା । ଭାଙ୍ଗି ପଡ଼ିଥିଲେ ଜନ୍ କେନେଡ଼ି । ତା' ପରବର୍ଷ ତାଙ୍କ ଖର୍ଚ୍ଚ ୧,୨୧,୪୬୧ ଡଲାରରେ ପହଞ୍ଚିଥିଲା । ଥରେ ଜଣେ ବନ୍ଧୁଙ୍କୁ ଥଟ୍ଟା କରି ଜାକି କହିଥିଲେ - "ଆମେରିକା ସରକାରଙ୍କ ଖର୍ଚ୍ଚଠାରୁ ମୋ ଖର୍ଚ୍ଚ ଅଧିକ ହୋଇ ଯାଉଥିବାରୁ ମାନ୍ୟବର ରାଷ୍ଟ୍ରପତି ବିବ୍ରତ ହୋଇ ପଡୁଛନ୍ତି ।"

ବିଶ୍ୱର ବଡ଼ ବଡ଼ ରାଜା ମହାରାଜା ମାନ୍ୟଗଣ ବ୍ୟକ୍ତିଙ୍କଠାରୁ ଜାକି, ଜନ୍‌ଙ୍କ ଅନିଚ୍ଛାସତ୍ତ୍ୱେ ଉପହାର ସଂଗ୍ରହ କରି ଚାଲିଥିଲେ । ଏହି ବଦାନ୍ୟ ବ୍ୟକ୍ତିମାନେ ଥିଲେ ଫ୍ରାନସର ରାଷ୍ଟ୍ରପତି, ପାକିସ୍ଥାନର ରାଷ୍ଟ୍ରପତି, ଲିବିୟାର ରାଜା, ଇଥିଓପିଆର ରାଜା, ମରକୋର ସାହା ହାସନ, ଭାରତର ନେହେରୁ ପ୍ରମୁଖ । ଜାକିଙ୍କର ସାନଭଉଣୀ ଲି ନିଜର ସ୍ୱାମୀ ରାଜକୁମାର ଷ୍ଟାନିସଲାସ ରାଜି ଉଇଲଙ୍କୁ ଛାଡ଼ପତ୍ର ଦେଇ ଗ୍ରୀକ୍ ବ୍ୟବସାୟୀ ଆରିଷ୍ଟଟଲ ଓ ନାସିସଙ୍କୁ ବିବାହ କରିବାକୁ ଚାହୁଁଥିଲେ । ୧୯୬୩ରେ ଜାକିଙ୍କର ତୃତୀୟ ସନ୍ତାନର ମୃତ୍ୟୁ ହେବାରୁ ସେ ଭାଙ୍ଗି ପଡ଼ିଥିଲେ । କିଛି ସମୟ ଓନାସିସଙ୍କ ବିଳାସ ଅର୍ଣ୍ଣବ କ୍ରିଷ୍ଟିନାରେ କଟାଇବା ପାଇଁ ଲି ଭଉଣୀକୁ ନିମନ୍ତ୍ରଣ କରିଥିଲେ । ଜନ୍‌ଙ୍କ ଇଚ୍ଛା ବିରୁଦ୍ଧରେ ମଧ୍ୟ ଜାକି ଏହି ନିମନ୍ତ୍ରଣକୁ ସ୍ୱାଗତ କରିଥିଲେ । ବାଧା ଦେଇନଥିଲେ ଜନ୍ । ନିଜ ଭଉଣୀ ପାଇଁ ବିବାହ ବୁଝିବାକୁ ଆସି ଓନାସିସଙ୍କ ପ୍ରେମରେ ପଡ଼ିଗଲେ ଜାକି । ଏ ବିଷୟରେ ଲି ସମସ୍ତ ଘଟଣା ଭିଣୋଇ କେନେଡ଼ିଙ୍କୁ ଜଣାଇଥିଲେ ।

୧୯୬୩ ନଭେମ୍ବର ୨୨ରେ ଜନ୍ କେନେଡ଼ିଙ୍କୁ ଗୁଳିର ଶୀକାର ହେବାକୁ ପଡ଼ିଲା । ଖୁବ୍ ଭାଙ୍ଗି ପଡ଼ିଥିଲେ ଜାକି । କିନ୍ତୁ ତାଙ୍କୁ ଆମେରିକା ସରକାରଙ୍କ ପକ୍ଷରୁ ସବୁ ପ୍ରକାର ସୁରକ୍ଷା ପ୍ରଦାନ କରାଯାଇଥିଲା । ଶଶୁର କେନେଡ଼ି ତାଙ୍କର ସମସ୍ତ ସମ୍ପତ୍ତି ଦୁଇ ସନ୍ତାନଙ୍କ ନାମରେ ଉଇଲ କରାଇ ଦେଇଥିଲେ । ବୋହୂକୁ କୌଣସି ପ୍ରକାର ଦୁଃଖ ଅନୁଭବ କରିବାକୁ ସେ ଦେଇନଥିଲେ । ଜନ୍‌ଙ୍କ ସାନଭାଇ ରର୍ବଟ କେନେଡ଼ି ରାଷ୍ଟ୍ରପତି ପଦ ପାଇଁ ପ୍ରାର୍ଥୀ ହୋଇଥିବା ବେଳେ ୧୯୬୮ରେ ଗୁଳିର ଶୀକାର ହେଲେ । ଜାକିଙ୍କ ସହିତ ରର୍ବଟଙ୍କର ଦୈହିକ ସମ୍ପର୍କ ଥିଲା ବୋଲି ଅନେକ ମତ ଦିଅନ୍ତି । ରବର୍ଟଙ୍କ ଶୁଦ୍ଧିକ୍ରିୟା ଶେଷହେବା ପରେ ପରେ ଜାକି ଓନାସିସଙ୍କ ପାଖକୁ ମୁଦ୍ରିକା ନେଇ ନିଜ ମା' କେନେଟଙ୍କ ଘରକୁ ସପ୍ତାହକ ପାଇଁ ନିଜ କନ୍ୟା କ୍ରିଷ୍ଟିନା ସହିତ ଆସିବା ପାଇଁ ଅନୁରୋଧ କଲେ । ଅନିଚ୍ଛା

ସତ୍ତ୍ୱେ କେନେଡ୍ ଓ ନାସିସଙ୍କୁ ଗ୍ରହଣ କଲେ। କ୍ରମେ ଓନାସସ ଏବଂ ଜାକିଙ୍କ ସମ୍ପର୍କ ବଢ଼ିବାକୁ ଲାଗିଲା। ଏହି ସମ୍ପର୍କର ଫାଇଦା ଉଠାଇଲେ କେନେଡ଼ି ପରିବାରର ଏଡ୍‌ୱାର୍ଡ କେନେଡ଼ି। ମ୍ୟାରେଜ କଣ୍ଟ୍ରାକ୍ଟରେ ଜାକିଙ୍କର ଦୁଇଟି ପିଲାଙ୍କୁ ୩ ଲକ୍ଷ ଡଲାର୍ କରି ଏବଂ ଜାକିଙ୍କୁ ଦେଢ଼ଲକ୍ଷ ଡଲାର କରି ବର୍ଷକୁ ଦେବା ପାଇଁ ଓନାସିସ ବ୍ୟବସ୍ଥା କରିଦେଲେ।

୧୯୬୮ ଅକ୍ଟୋବର ୨୦ରେ ଓନାସିସ ଏବଂ ଜାକିଙ୍କର ବିବାହ ସମାପନ ହେଲା। ବିବାହ ପରେ ପରେ ଜାକିଙ୍କର ବେପରୁଆ ଖର୍ଚ୍ଚ ପାଇଁ ଓନାସିସ କେବେ ମଧ୍ୟ ପାଟି ଫିଟାଇ ନଥିଲେ। ଧିରେ ଧିରେ ଜାକି ତାଙ୍କ ନିୟନ୍ତ୍ରଣ ବାହାରକୁ ମଧ୍ୟ ଚାଲିଗଲେ। ୧୯୭୦ ଫେବୃୟାରୀ ମାସରେ ଜାକିଙ୍କର କେତୋଟି ପ୍ରେମପତ୍ର ପ୍ରକାଶିତ ହୋଇଥିଲା। ଏଗୁଡ଼ିକ ସେ ପ୍ରେମିକ ରସୱେଲ ଗିଲପାଟ୍ରିକଙ୍କୁ ଲେଖିଥିଲେ। ଘଟଣାଟି ଓନାସିସଙ୍କ ଭାରସାମ୍ୟକୁ ଦୋହଲାଇ ଦେଲା। ଏଇ କାରଣରୁ ଗିଲପାଟ୍ରିକଙ୍କୁ ତାଙ୍କ ସ୍ତ୍ରୀ ଡାଇଭର୍ସ କରିଥିଲେ। ୧୯୭୩ ଜାନୁୟାରୀ ୨୩ରେ ଓନାସିସଙ୍କ ଏକମାତ୍ର ପୁତ୍ର ଆଲେକ୍‌ଜାଣ୍ଡାର ବିମାନ ଦୁର୍ଘଟଣାରେ ପ୍ରାଣ ହରାଇଲେ। ମନେ ମନେ ଓନାସିସ ଜାକିଙ୍କୁ ଡାଇଭର୍ସ କରିବା ପାଇଁ ସ୍ଥିର କରିଥିବା ବେଳେ ଜାକିଙ୍କର ବ୍ୟୟବହୁଳ ବିଲ୍‌ମାନ ତାଙ୍କ ପାଖରେ ପହଞ୍ଚିବାକୁ ଲାଗିଲା। ଏଥିପାଇଁ ଉଭୟଙ୍କ ମଧ୍ୟରେ ମନୋମାଳିନ୍ୟ ସାଧାରଣ ସ୍ତରକୁ ଆସିଗଲା। ଓନାସିସଙ୍କ ସ୍ୱାସ୍ଥ୍ୟ ଖରାପ ହେବାରୁ ତାଙ୍କୁ ଚିକିତ୍ସା ପାଇଁ ପ୍ୟାରିସ୍‌ର ଏକ ଡାକ୍ତଖାନାରେ ଭର୍ତ୍ତି କରାଇ ଜାକି ନିୟୁୟର୍କ ଫେରି ଆସିଥିଲେ। ସେଠାରେ ପହଞ୍ଚି ସେ ଓନାସିସଙ୍କ ମୃତ୍ୟୁ ସମ୍ବାଦ ପାଇଥିଲେ ୧୯୭୫ ଜୁନ ୧୫ ତାରିଖରେ। ଓନାସିସଙ୍କ ସମ୍ପତ୍ତି ଜାକି ଏବଂ ତାଙ୍କ ଝିଅ କ୍ରିଷ୍ଟିନାଙ୍କ ମଧ୍ୟରେ ବାଣ୍ଟ ହେଲା।

ଦ୍ୱିତୀୟ ସ୍ୱାମୀଙ୍କ ମୃତ୍ୟୁର ଛ'ମାସ ନ ପୁରୁଣୁ ଜାକି ଖୋଜି ବୁଲିଲେ ପୁଣି ଜଣେ ପୁରୁଷ ବନ୍ଧୁ। ହଠାତ୍ ତାଙ୍କର ବନ୍ଧୁତ୍ୱ ଗଢ଼ିଉଠିଲା ପେଟେ ହାମିଲଙ୍କ ସହିତ। ଶେଷରେ ହାମିଲଙ୍କୁ ମଧ୍ୟ ଖାଲି ହାତରେ ଫେରିବାକୁ ପଡ଼ିଲା। ହାମିଲ ପୂର୍ବରୁ ତାଙ୍କର ପୂର୍ବତନ ପ୍ରେମିକା ଫିଲ୍ମଷ୍ଟାର ମାକ୍ଲେନଙ୍କ ସହିତ ବନ୍ଧନ ଛିନ୍ନକରି ସାରିଥିଲେ। ଇତି ମଧ୍ୟରେ ଜାକିଙ୍କର ଅନେକ ବନ୍ଧୁ ଆସିଯାଇଥିଲେ। ସେମାନଙ୍କ

ମଧ୍ୟରୁ ଜାକି ପସନ୍ଦ କରିଥିଲେ ମରିସ ଟେମ୍ପଲସମ୍ୟାନଙ୍କୁ । ଟେମ୍ପଲସମ୍ୟାନ ଥିଲେ ବିବାହିତ ପ୍ରୌଢ଼ । ବୟସର ଉତ୍ତୀର୍ଣ୍ଣ ପାହାଚରେ ଉଭୟ ଉଭୟଙ୍କର କେବଳ ବନ୍ଧୁତ୍ୱ ଚାହୁଁଥିଲେ । ଜାକି ମଧ୍ୟ ଧନସମ୍ପଦର ନିଶାଠାରୁ ଥିଲେ ଅନେକ ଦୂରରେ । ସପ୍ତାହରେ କେତେଦିନ ସେମାନେ ପରସ୍ପରକୁ ଭେଟୁଥିଲେ ।

୧୯୯୪ ଏପ୍ରିଲ ୨୦ ତାରିଖର ରଏଟର ସମ୍ବାଦରୁ ପ୍ରକାଶ ଯେ ଜାକି କ୍ୟାନସର ରୋଗରେ ପୀଡ଼ିତ ହୋଇଥିଲେ । ଜାକିଙ୍କ ପିଲାମାନେ ବିବାହ କରିଗଲେଣି । ମନରେ ତାଙ୍କର ଆଉ ସେ ପୂର୍ବର ମାଦକତା ନାହିଁ । ତଥାପି ତାଙ୍କଠାରୁ ରୂପର ଝଲକ ଊଣା ପଡ଼ିନାହିଁ । ନିୟମିତ ଯୋଗାସନ, ସମ୍ପାଦନା କାର୍ଯ୍ୟ, ପିଲାମାନଙ୍କ ସହିତ ସମୟ ବିତାଇବାରେ ତାଙ୍କର ଶୂନ୍ୟ ଜୀବନ କଟିଯାଉଛି । ଖର୍ଚ୍ଚ ତାଙ୍କର ଅନେକ କମିଯାଇଛି । ଅର୍ଥକୁ ସେ ସମ୍ପୂର୍ଣ୍ଣ ନିୟନ୍ତ୍ରଣ କରିପାରିଛନ୍ତି । ପ୍ରତିବର୍ଷ କେନେଡ଼ିଙ୍କ ସମାଧି ଉପରେ ସେ ଫୁଲ ଚଢ଼ାଇ ଚାଲିଛନ୍ତି । ହୁଏତ କେନେଡ଼ିଙ୍କ ଆତ୍ମା ତାଙ୍କୁ କ୍ଷମା କରିଦେଇପାରେ.... !!



# ନେହେରୁଙ୍କ ଜାଲରେ ଏଡିନା (ଭାରତ)

ନେହେରୁଙ୍କ ପତ୍ନୀବିୟୋଗ ପରେ ପରେ ଏପରି ଘଟିଥିଲା। ତାଙ୍କ ଜୀବନରେ ଦେଖା ଦେଇଥିଲେ କିଛି ସମୟ ପାଇଁ ଏଡିନା ମାଉଣ୍ଟବାଟେନ, ଭାରତର ଶେଷ ଗଭର୍ଣ୍ଣର ଜେନେରାଲଙ୍କ ପତ୍ନୀ। ନେହେରୁ ଏବଂ ଏଡିନାଙ୍କ ସମ୍ପର୍କ ବିଷୟରେ ବହୁ କଥା ଶୁଣାଯାଏ। ନେହେରୁଙ୍କ ଶୂନ୍ୟ ହୃଦୟ କିଛି ପରିମାଣରେ ରୋମାଞ୍ଚିତ ହୋଇ ଉଠିଥିଲା। ୧୯୩୬ରେ ନେହେରୁଙ୍କ ପତ୍ନୀ କମଳା ନେହେରୁ ସୁଇଜରଲାଣ୍ଡଠାରେ ଶେଷ ନିଶ୍ୱାସ ତ୍ୟାଗ କରନ୍ତି। ସେହି ବର୍ଷ କ୍ରିଷ୍ଣାମେନନ୍‌ଙ୍କ ସମ୍ପାଦନାରେ ନେହେରୁଙ୍କ ଆତ୍ମଜୀବନୀ ଲଣ୍ଡନରୁ ପ୍ରକାଶିତ ହୁଏ। ଏହି ପୁସ୍ତକ ପାଠ ପାଇଁ ମେନନ୍, ଏଡିନାଙ୍କୁ ଅନୁରୋଧ କରିଥିଲେ ସେତେବେଳେ। କାରଣ ଏଡିନା ଭାରତର ସ୍ୱାଧୀନତାକୁ ସମର୍ଥନ କରୁଥିଲେ। ପ୍ରଥମଥର ପାଇଁ ଏଡିନା ଭାରତକୁ ଆସିଥିଲେ ୧୯୨୨ରେ। ତାଙ୍କ ସହିତ ମଧ୍ୟ ଆସିଥିଲେ ମାଉଣ୍ଟବାଟେନ। ଲଣ୍ଡନକୁ ଫେରି ସେମାନେ ବିବାହ କରିଥିଲେ। ବାଲ୍ୟାବସ୍ଥାରୁ ଏଡିନାଙ୍କ ମାତୃବିୟୋଗ ତାଙ୍କୁ ଗଭୀର ଭାବପ୍ରବଣ ଏବଂ ଆତ୍ମସଚେତନ କରାଇଥିଲା। ପତ୍ନୀବିୟୋଗ ପରେ ନେହେରୁ ମଧ୍ୟ ଭାବପ୍ରବଣ ହୋଇଉଠିଥିଲେ। ଉଭୟଙ୍କ ଜୀବନର ଏଇ ଦିଗଟି ସମାନ ଥିଲା, ଯାହା ସେମାନଙ୍କୁ ପରସ୍ପରର ନିକଟବର୍ତ୍ତୀ କରାଇ ପାରିଥିଲା।

> **ବିଶ୍ୱର ସର୍ବୋଚ୍ଚ ସ୍ଥାନରେ ଥିବା ବ୍ୟକ୍ତିବିଶେଷଙ୍କ ଜୀବନରେ ପ୍ରେମ ଏକ ନୂଆ ରୋମାଞ୍ଚ ସୃଷ୍ଟି କରିଛି। କେଉଁଠି ଏହା ଶାରିରୀକ ମିଳନ ଭିତରେ ସୀମିତ ହୋଇଯାଇଛି ତ, ପୁଣି କେଉଁଠି ଏହା ଆତ୍ମିକ ଆନନ୍ଦ ଦିଗରେ ଅଗ୍ରସର ହୋଇଛି। ଦୈହିକ ମିଳନ ବିନା ମଧ୍ୟ ପ୍ରେମ ରୋମାଞ୍ଚ ସୃଷ୍ଟି କରିପାରେ ଏବଂ ଦୁଇଟି ଆତ୍ମାକୁ ପରସ୍ପର ପ୍ରତି ଆକର୍ଷିତ କରାଇଥାଏ। ଏହାର ପ୍ରମାଣ ଆମେ ଭାରତରେ ପ୍ରଥମ ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହେରୁଙ୍କ ଜୀବନରୁ ପାଇପାରିବା।**

ମାଉଣ୍ଟବାଟେନ ଭଲଭାବରେ ଜାଣିଥିଲେ ଯେ ତାଙ୍କ ପତ୍ନୀ ନେହେରୁଙ୍କୁ ଗଭୀର ଭାବେ ଭଲ ପାଆନ୍ତି। ଏଥିରେ ସେ ଆଦୌ ବାଧା

ଦେଇ ନଥିଲେ । ବରଂ ଉତ୍ସାହିତ କରିଥିଲେ । ତିନିଜଣଙ୍କ ପାରସ୍ପରିକ ବୁଝାମଣା ଉପରେ ଏହି ସମ୍ପର୍କ ଗଢ଼ି ଉଠିଥିଲା । ନେହେରୁ ଯେତେବେଳେ ଲଣ୍ଡନ ଯାଉଥିଲେ, ମାଉଣ୍ଟବାଟେନଙ୍କ ପରିବାରର ଅତିଥି ହେଉଥିଲେ ଏବଂ ଏଡିନା, ଭାରତ ଆସିଲେ ନେହେରୁଙ୍କୁ ଭେଟିବାକୁ ଭୁଲୁ ନଥିଲେ । ଉଭୟଙ୍କ ସମ୍ପର୍କ ଅତି ପବିତ୍ର ଏବଂ ନିବିଡ଼ ଥିଲା । ନେହେରୁ ଏଡିନାଙ୍କୁ ଚିଠି ଲେଖୁଥିଲେ କିନ୍ତୁ ମାଉଣ୍ଟବାଟେନଙ୍କୁ ଟାଇପ୍ କରି ଚିଠି ଦେଉଥିଲେ । ଏଡିନାଙ୍କ ପାଖକୁ ଲେଖିଥିବା ସମସ୍ତ ଚିଠିକୁ ମାଉଣ୍ଟବାଟେନ ଏକ ଷ୍ଟିଲ ବାକ୍ସରେ ସାଇତି ରଖିଥିଲେ । ଏହି ପ୍ରେମପତ୍ର ଗୁଡ଼ିକର ଓଜନ ୩୦ କିଲୋଗ୍ରାମ ଥିଲା । ନେହେରୁଙ୍କର ଏହି ପ୍ରେମପତ୍ର ଗୁଡ଼ିକ ପ୍ରାୟ ୬୧ରୁ ୭୦ ବର୍ଷ ମଧ୍ୟରେ ଲେଖାଯାଇଥିଲା । ଏଇ ପତ୍ରଗୁଡ଼ିକର ସେହିଭଳି ଉତ୍ତର ମଧ୍ୟ ଏଡିନା ଦେଉଥିଲେ । ପ୍ରତ୍ୟେକ ପତ୍ରରେ ଏକ ଅପୂର୍ବ ମହକ ଭରି ରହିଥିଲା । ଏଡିନା ଦୁଇଟି ପୁରୁଷଙ୍କୁ ଭୁଲିପାରି ନଥିଲେ । ସେ ଦୁଇଜଣ ହେଲେ ମାଉଣ୍ଟବାଟେନ ଏବଂ ନେହେରୁ, ଯେଉଁମାନେ ଏହି ମହିଳାଙ୍କୁ ବୁଝିପାରି ଥିଲେ ।

୧୯୪୫ରୁ - ଏଡିନାଙ୍କ ସମ୍ପର୍କ ଗଢ଼ି ଉଠିଥିଲା । ଅହମ୍ମଦନଗର ଜେଲ୍‌ରେ ନେହେରୁ ୧୯୪୫ରେ ବନ୍ଦୀ ଥିବାବେଳେ ମାଉଣ୍ଟବାଟେନ ତାଙ୍କୁ ଭେଟିବାକୁ ଯାଇ ବିଫଳ ହୋଇଥିଲେ । ୧୯୪୬ରେ ନେହେରୁ ମୁକ୍ତ ହୋଇ ସିଙ୍ଗାପୁର ଯାଇଥିଲେ ସେଠାକାର ଭାରତୀୟ ସଂଗ୍ରାମୀମାନଙ୍କୁ ଭେଟିବା ପାଇଁ । ମାଉଣ୍ଟବାଟେନ ବହୁ କଷ୍ଟରେ ନେହେରୁଙ୍କୁ ନିକେ ରହୁଥିବା ହୋଟେଲକୁ ଆଣିଥିଲେ । ସିଙ୍ଗାପୁରଠାରେ ୱାଇ.ଏମ୍.ସି.ଏ. ବିଲ୍ଡିଙ୍ଗ୍‌ରେ ଏଭଳି ଭିଡ଼ ହେଲା ଯେ ଏଡିନା ଭାରସମ୍ୟ ହରାଇ ଚଟାଣରେ ପଡ଼ିଗଲେ । ହୁଏତ ଜନତାର ପାଦରେ ଚକଟି ହୋଇଯାଇଥାନ୍ତେ । କିନ୍ତୁ ତାଙ୍କୁ ଏଠାରେ ଜନତାକୁ ପିଠିକରି ଶୋଇରହି ରକ୍ଷା କରିଥିଲେ ନେହେରୁ ଏବଂ ମାଉଣ୍ଟବାଟେନ । ଯାହା ପରଠାରୁ ତିନିଜଣଙ୍କ ସମ୍ପର୍କ ଗଭୀରରୁ ଗଭୀରତର ହୋଇଥିଲା । ମାଉଣ୍ଟବାଟେନ ଭାରତର ଶେଷ ଗଭର୍ଣ୍ଣର ଜେନେରାଲ ଭାବେ ଖୁବ୍ କମ୍ ସମୟ ପାଇଁ ଦାୟିତ୍ୱ ଗ୍ରହଣ କରିଥିଲେ । ଏହି ସମୟ ମଧ୍ୟରେ ଏଡିନା ଏବଂ ନେହେରୁ ପରିବାର ମଧ୍ୟରେ ଗଭୀର ବନ୍ଧୁତ୍ୱ ସ୍ଥାପିତ ହୋଇଥିଲା ।

ଭାରତ ସ୍ୱାଧୀନ ହେବା ପରେ ମାଉଣ୍ଟବାଟେନ ଲଣ୍ଡନ ଫେରିଥିଲେ । ବିଦାୟ ସଭାରେ ନେହେରୁଙ୍କ କଣ୍ଠ ରୁଦ୍ଧ ହୋଇଯାଇଥିଲା ।

ଏଡିନାଙ୍କର ଭାରତ ପାଇଁ ଏକ ପ୍ରକାର ଗଭୀର ମମତା ଥିଲା ଯାହା ନେହେରୁ ଏବଂ ତାଙ୍କୁ ଖୁବ୍ ନିକଟତର କରିପାରିଥିଲା । ଏଡିନା ଲଣ୍ଡନ ଗଲେ ମଧ୍ୟ ଚିଠିପତ୍ରର ଆଦାନ ପ୍ରଦାନରେ ବିଶ୍ରାମ ନଥିଲା । ୧୯୪୯ରେ ନେହେରୁ କମନୱେଲଥ୍ ପ୍ରାଇମ୍‌ମିନିଷ୍ଟର କନଫେରେନ୍‌ସରେ ଯୋଗଦେବାକୁ ଲଣ୍ଡନ ଗଲେ ।

ସେଠାରେ ନେହେରୁଙ୍କ ସାଥିରେ ପୁଣି ଦେଖାଦେଲେ ଏଡିନା । ସେଣ୍ଟଜନ ଆମ୍ବୁଲାନସ୍, ରେଡକ୍ରସ, ସେଭ୍ ଦି ଚିଲଡ୍ରେନସ ଫଣ୍ଡ ସହିତ ସକ୍ରିୟ ଭାବେ ଜଡ଼ିତ ହୋଇଥିବାରୁ ବାରମ୍ବାର ଏଡିନାଙ୍କୁ ଦିଲ୍ଲୀଆସିବାକୁ ପଡୁଥିଲା । ଦିଲ୍ଲୀରେ ସେ ନେହେରୁଙ୍କ ଅତିଥି ହେଉଥିଲେ । ୧୯୫୯ରେ ନେହେରୁଙ୍କର ୭୦ତମ ଜନ୍ମଦିନ ପାର୍ଟି ଏଡିନା ପ୍ରଦାନ କରିଥିଲେ ଲଣ୍ଡନଠାରେ । ଏହି ଉତ୍ସବରେ ନେହେରୁ ଯୋଗଦେଇଥିଲେ । ଏଡିନା ନେହେରୁଙ୍କ ସହିତ କାଶ୍ମୀର, ସିମିଳା ଅନେକ ଥର ଯାଇଛନ୍ତି । ବନ୍ୟ ସୁଷମା ସେମାନଙ୍କ ହୃଦୟକୁ ଏକ ଅଲୌକିକ ଆନନ୍ଦରେ ଭରି ଦେଉଥିଲା ।

୧୯୬୦ରେ ନେହେରୁ ଦଶମ ସାଧାରଣତନ୍ତ୍ର ଉତ୍ସବରେ ଯୋଗଦେବାକୁ ଏଡିନାଙ୍କୁ ନିମନ୍ତ୍ରଣ କରିଥିଲେ । ଏହି ଉତ୍ସବରେ ମୁଖ୍ୟ ଅତିଥି ଭାବେ ଯୋଗଦେବାକୁ ଆସିଥାନ୍ତି ସୋଭିଏତ ପ୍ରେସିଡେଣ୍ଟ ମାର୍ଶାଲ ଭରୋସିଲୋଭା । ଏଥର ନେହେରୁଙ୍କ ପାଖେ ପାଖେ ଥିଲେ ଏଡିନା । ସନ୍ଧ୍ୟାରେ ମୋଗଲ ଗାର୍ଡେନ୍‌ରେ ଏକ ପାର୍ଟିର ବନ୍ଦୋବସ୍ତ ହୋଇଥିଲା । ଏହି ସଭାରେ ନେହେରୁ ଏଡିନାଙ୍କ ହାତଧରି ଅତିଥିମାନଙ୍କୁ ପରିଚୟ କରାଇଥିଲେ । ଜାନୁୟାରୀ ୨୯ରେ ବିଟିଙ୍ଗ୍ ଦି ରିଟ୍ରେଟ ଉତ୍ସବ ଉପଲକ୍ଷେ ତ୍ରିମୂର୍ତ୍ତି ଭବନରେ ନୃତ୍ୟ ଆସରର ଆୟୋଜନ କରାଯାଇଥିଲା । ଏହି ଉତ୍ସବରେ ନେହେରୁଙ୍କ ସହିତ ଏଡିନା ଯୋଗଦେଇଥିଲେ । ତାଙ୍କ ଶରୀର ଅସୁସ୍ଥ ଥିଲେ ମଧ୍ୟ ଏ ବିଷୟରେ ସେ ନେହେରୁଙ୍କୁ ଜାଣିବାକୁ ଦେଇନଥିଲେ । ଦିଲ୍ଲୀରୁ ଏଡିନା ସିଙ୍ଗାପୁର ଗଲେ । ରାତିରେ ଯନ୍ତ୍ରଣା ଅନୁଭବ କରିବାରୁ ସେଠାରେ ଉତ୍ତର ବୋର୍ଣ୍ଣିଓର ଏକ ଡାକ୍ତଖାନାରେ ତାଙ୍କୁ ଭର୍ତ୍ତି କରାଯାଇଥିଲା ।ଫେବୃୟାରୀ ୨୫ ତାରିଖ ଦିନ ସକାଳୁ ସେ ମୃତ ବୋଲି ଜଣାପଡ଼ିଲା ।

ଖୁବ୍ ଭାଙ୍ଗି ପଡ଼ିଥିଲେ ନେହେରୁ । ଏଡ୍‌ୱିନାଙ୍କ ମୃତ୍ୟୁ ତାଙ୍କୁ ଦାରୁଣ ଆଘାତ ଦେଇଥିଲା । ଶେଷ ଇଚ୍ଛା ଅନୁଯାୟୀ ଏଡ୍‌ୱିନାଙ୍କ କଫିନ୍‌କୁ ସମୁଦ୍ର ମଧ୍ୟରେ ଭସାଇ ଦିଆଯାଇଥିଲା । ଭାରତୀୟ ନୌବାହିନୀ ପକ୍ଷରୁ 'ତ୍ରିଶୂଳ' ଏହି ଉତ୍ସବରେ ଭାଗ ନେଇଥିଲା । ସମୁଦ୍ର ମଧ୍ୟକୁ ଏଡ୍‌ୱିନାଙ୍କ ଉଦ୍ଦେଶ୍ୟରେ କାଶ୍ମୀରରୁ ସଂଗୃହୀତ ପୁଷ୍ପ ତ୍ରିଶୂଳରୁ ପକାଯାଇଥିଲା । ଦୀର୍ଘ ୧୫ ବର୍ଷ ଧରି ନେହେରୁ ଏବଂ ଏଡ୍‌ୱିନାଙ୍କ ମଧ୍ୟରେ ମଧୁର ସମ୍ପର୍କ ଗଢ଼ି ଉଠିଥିଲା । ଏଡ୍‌ୱିନାଙ୍କ ମୃତ୍ୟୁର ୪ ବର୍ଷ ପରେ ୧୯୬୪ରେ ନେହେରୁ ପ୍ରାଣତ୍ୟାଗ କରିଥିଲେ । ଉଭୟ ଆଜି ସ୍ୱର୍ଗରେ । ତେବେ ସେମାନଙ୍କ ସ୍ନେହ, ସମ୍ପର୍କ, ଆଦର୍ଶ ଏବଂ ପ୍ରେମ ବିଶ୍ୱ-ଇତିହାସରେ ଏକ ସ୍ପଷ୍ଟ ଚିତ୍ର ଅଙ୍କନ କରିପାରିଛି ।



———

# ସୌଭାଗ୍ୟ ଶୀର୍ଷରେ 'ଫାରା' (ଇରାନ)

ଇରାନର ଶାହା ଅର୍ଥାତ୍ ମହମ୍ମଦ ରେଜା ପହ୍ଲବୀ ପ୍ରଥମେ ବିବାହ କରିଥିଲେ ୧୯୩୮ରେ ମିଶର ରାଜା ଫାରୁକଙ୍କ ଭଉଣୀ ରାଜକୁମାରୀ ଫଜିଆଙ୍କୁ। ୧୯୪୦ରେ ସେ ଏକ କନ୍ୟା ସନ୍ତାନକୁ ଜନ୍ମ ଦେଇଥିଲେ। ମାତ୍ର ଫଜିଆଙ୍କର କୌଣସି ପୁତ୍ର ସନ୍ତାନ ନ ହେବାରୁ ଇରାନର ସମ୍ବିଧାନ ଅନୁସାରେ ସେ ୧୯୪୮ରେ ମିଶର ଫେରି ଆସିଥିଲେ ଏବଂ କାଏରୁରୁ ସେ ଶାହାଙ୍କୁ ଛାଡ଼ପତ୍ର ଦେଇଥିଲେ। ଶାହା ୧୯୫୦ରେ ସେ ସୋରୋୟାଙ୍କୁ ବିବାହ କରିଥିଲେ। ବିବାହର ୭ ବର୍ଷ ବିତିଗଲା। ରାଣୀଙ୍କର କୌଣସି ସନ୍ତାନ ଜନ୍ମ ହେଲା ନାହିଁ। ତାଙ୍କୁ ଡାକ୍ତରୀ ପରୀକ୍ଷା କରାଗଲା। ରିପୋର୍ଟରୁ ଜଣାପଡ଼ିଲା ଯେ ସୋରୋୟା କେବେ ମା' ହୋଇ ପାରିବେନି। ତାଙ୍କୁ ମଧ୍ୟ ଫଜିଆଙ୍କ ଦଶା ଭୋଗିବାକୁ ପଡ଼ିଲା। ୧୯୫୮ରେ ସୋରୋୟା ଛାଡ଼ପତ୍ର ନେଇଥିଲେ। ଶାହାଙ୍କ ଜୀବନରେ ତୃତୀୟଥର ପାଇଁ ଦେଖାଦେଲେ ଫାରା, ଯେ କି ତାଙ୍କର ସବୁ ସ୍ୱପ୍ନକୁ ସାର୍ଥକ କରିଥିଲେ।

**ଏକ ସାଧାରଣ ପରିବାରରେ ଜନ୍ମଗ୍ରହଣ କରିଥିବା ଫାରା କେବେ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲେ ଯେ ସେ ଦିନେ ଇରାନ ଶାହାଙ୍କର ରାଣୀ ହେବେ। ଏଥିପାଇଁ ଦାୟୀ ତାଙ୍କର ଅନିନ୍ଦ୍ୟ ସୁନ୍ଦର ରୂପମାଧୁରୀ, ଯାହାର ପ୍ରଥମ ଦର୍ଶନରେ ଶାହାଙ୍କ ଆଖି ଝଲସି ଯାଇଥିଲା। ଫାରା ହେଲେ ଅର୍ଥ, କ୍ଷମତା ଏବଂ ସୌନ୍ଦର୍ଯ୍ୟର ଏକ ମାତ୍ର ଉତ୍ତରାଧିକାରିଣୀ। ଶାହାଙ୍କ ମୃତ୍ୟୁପରେ ଫାରାଙ୍କ ଜୀବନରେ ଦେଖା ଦେଇଥିଲେ ଜଣେ ଦ୍ୱିତୀୟ ପୁରୁଷ। ରାତିର ଅନ୍ଧାର, ବ୍ୟାଙ୍କରେ ଗଚ୍ଛିତ ଅସୁମାରୀ ଧନ ଫାରାଙ୍କ ଜୀବନକୁ ମସ୍‌ଗୁଲ କରିଥିଲା, ତଥାପି..... ?**

ଫାରାଙ୍କ ଜନ୍ମ ୧୯୩୮ ଅକ୍ଟୋବର ୧୪ ତାରିଖରେ। ତାଙ୍କ ପିତା ଇରାନର ସାମରିକ ଅଫିସର। ଇରାନରେ ପଢ଼ା ଶେଷ କରି ଫାରା ପ୍ୟାରିସକୁ ଆର୍କିଟେକ୍‌ଚରରେ ଏକ କୋର୍ସ କରିବା ପାଇଁ ଯାଇଥିଲେ। ପ୍ୟାରିସଠାରେ ଇରାନ ଦୂତାବାସଠାରେ ଶାହା ଇରାନର ଛାତ୍ରଛାତ୍ରୀଙ୍କୁ ଭେଟିଥିବା ବେଳେ ପ୍ରଥମ ଫାରାଙ୍କୁ ଦେଖିଥିଲେ। ଫାରାଙ୍କ ସୌନ୍ଦର୍ଯ୍ୟରେ ସେ ବିମୋହିତ ହୋଇ ଉଠିଥିଲେ ଏବଂ

ଇରାନ ଗଲେ ତାଙ୍କୁ ଭେଟିବାକୁ କହିଥିଲେ। କାରଣ ଇରାନ ପ୍ରାସାଦର ଡାଞ୍ଚା ସେ ବଦଳାଇବାକୁ ପସନ୍ଦ କରିଥିଲେ।

ତା'ପରେ ବିତିଯାଇଛି ଦୁଇ ବର୍ଷ। ସ୍କଲାରସିପ୍ ସମ୍ପର୍କରେ କଥାବାର୍ତ୍ତା ପାଇଁ ଫାରା ଖରାଦିନ ଛୁଟିରେ ତେହେରାନ ଯାଇଥାନ୍ତି। ସେହି ବିଭାଗର ଡାଇରେକ୍ଟର ଥାଆନ୍ତି ଶାହାଙ୍କ ଜାମାତା ଆଡ୍ରେସିର ଜାହେଦି। ଡାଇରେକ୍ଟରଙ୍କ ଅଫିସ ଛାଡ଼ିବା ବେଳେ ଶାହାଙ୍କ କନ୍ୟା ଶାହନାଜ (ଜାହେଦୀଙ୍କ ପତ୍ନୀ) ଫାରାଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇଥିଲେ ଦୁଇଦିନ ପରେ ଶାହନାଜ ଫାରାଙ୍କୁ ତାଙ୍କ ଘରକୁ ଚା'ପାନ ପାଇଁ ଡକାଇଥିଲେ। ପୂର୍ବରୁ ଶାହନାଜ ନିଜ ପିତାଙ୍କ ସହିତ କଥାବାର୍ତ୍ତା କରିଥିଲେ। ଘଣ୍ଟାକ ପରେ ଶାହା ସେଠାରେ ପହଞ୍ଚିଥିଲେ। ଆଉ ଥରେ ମଧ୍ୟ ଏଠାକୁ ଫାରା ଆସିଥିଲେ। ଏଥର ଶାହା ବିବାହ ପାଇଁ ପ୍ରସ୍ତାବ ଦେଇଥିଲେ। ଫାରା ଏସବୁ କଥା ସ୍ୱପ୍ନରେ ମଧ୍ୟ କଳ୍ପନା କରି ନ ଥିଲେ। ସେ ନିଜକୁ ମଧ୍ୟ ବିଶ୍ୱାସ କରିପାରୁ ନଥିଲେ।

ଫାରା ପ୍ୟାରିସ୍ ବୁଲିବାର ଗୋଟିଏ ଦିନ ପରେ ସାନ୍ଧ୍ୟ ଖବର କାଗଜରେ ଶାହାଙ୍କ ସହିତ ତାଙ୍କର ବିବାହ ସମ୍ବାଦ ସହ ଫଟୋ ମଧ୍ୟ ଦେଖିବାକୁ ପାଇଲେ। ଏଇଠୁ ତାଙ୍କର ଜୀବନର ଧାରା ବଦଳିଗଲା। ଟେଲିଫୋନ, ଟେଲିଗ୍ରାମ୍, ଅଭିନନ୍ଦନ ବହୁ ସଂଖ୍ୟାରେ ଆସି ପହଞ୍ଚିଲା। ଫାରାଙ୍କ ଆର୍କିଟେକଚର ଜୀବନରେ ଡୋରି ବନ୍ଧାହେଲା। ଏହାର ତିନି ସପ୍ତାହ ପରେ ଶାହାଙ୍କ ସହିତ ତାଙ୍କର ବିବାହ ଅନୁଷ୍ଠିତ ହେଲା। ସେତେବେଳକୁ ତାଙ୍କ ବୟସ ୨୧ ବର୍ଷ ଏବଂ ଶାହାଙ୍କ ବୟସ ୩୯ ବର୍ଷ। ୧୯୬୦ ଅକ୍ଟୋବର ୩୧ ତାରିଖରେ ଫାରାଙ୍କର ଏକ ପୁତ୍ର ସନ୍ତାନ ଜାତ ହୋଇଥିଲା। ଇରାନ ଇତିହାସରେ ନୂଆ ଅଧ୍ୟାୟ ଆରମ୍ଭ ହେଲା। ଫାରାଙ୍କର ପରେ ଆଉ ଗୋଟିଏ ପୁଅ ଏବଂ ଦୁଇଟି ଝିଅ ଜାତ ହୋଇଥିଲା।

ଫାରାଙ୍କ ଇରାନରେ ପ୍ରଥମ ନାରୀ ଆର୍କିଟେକ୍ଟର ହେବାର ସ୍ୱପ୍ନ ସିନା ବିଫଳ ହୋଇଥିଲା ହେଲେ ଇରାନର ସେ ହେଲେ ସର୍ବମୟ କର୍ତ୍ତ୍ରୀ। ତାଙ୍କରି ପ୍ରଚେଷ୍ଟା ବଳରେ ୧୯୬୩ରେ ଇରାନର ମହିଳାମାନେ ଭୋଟ ଦେବାର ଅଧିକାର ଲାଭକଲେ। ନାରୀମାନେ ମେୟର, ନ୍ୟାସନାଲ ଆସେମ୍ବ୍ଲିର ମେମ୍ବର,

ଏପରିକି ମନ୍ତ୍ରୀ ମଧ୍ୟ ହୋଇପାରିଲେ। 'ତଲାଖ'ରେ ମଧ୍ୟ ସେ କେତେକ ପରିବର୍ତ୍ତନ ଆଣିଥିଲେ। ସେ ତାଙ୍କର ପ୍ରଥମ ସନ୍ତାନକୁ ସରକାରୀ ଡାକ୍ତରଖାନାରେ ଜନ୍ମ ଦେଇଥିଲେ। ଫଳରେ ଏହି ଡାକ୍ତରଖାନାର ଚେହେରା ବଦଳି ଯାଇଥିଲା। ସେ ଏକ ହଜାର ଶଯ୍ୟା ବିଶିଷ୍ଟ ମାଟରନିଟି ହସପିଟାଲ ମଧ୍ୟ ବସାଇଥିଲେ।

ଫାରା ଥିଲେ ଇରାନର ପ୍ରଥମ ସମ୍ମାନିତା ରାଣୀ, କାରଣ ସେଇ ଇରାନର ଭବିଷ୍ୟତ ଉଜ୍ଜ୍ୱଳ କରିପାରିଥିଲେ। ତାଙ୍କର ବନ୍ଧୁତ୍ୱ ଗଢ଼ି ଉଠିଥିଲା ଇଂଲଣ୍ଡ ରାଣୀ ଏଲିଜାବେଥ, ବେଲଜିୟମର ଫେବିଲା, ଜାପାନର ରାଣୀ ନାଗାକୋ, ଥାଇଲାଣ୍ଡର ସିରିକିଟଙ୍କ ସହିତ। ଜୋର୍ଡାନର ରାଜା ହୁସେନଙ୍କ ପତ୍ନୀ ଆଲି, ଗ୍ରୀସର ରାଜା କନ୍‌ଷ୍ଟାଣ୍ଟିନଙ୍କ ପତ୍ନୀ ଆନିମେରୀ ତାଙ୍କର ଖୁବ୍ ନିକଟତମ ଥିଲେ। ବିଦେଶ ଗସ୍ତ ବେଳେ ସେ ସେମାନଙ୍କ ରାଜପ୍ରାସାଦରେ ଅବସ୍ଥାନ କରୁଥିଲେ।

ସମଗ୍ର ଇରାନର ଧନସମ୍ପତ୍ତିକୁ ଶାହା ଏବଂ ତାଙ୍କ ରାଣୀ ଫାରା ଲୁଟିନେଇ ବିଦେଶୀ ବ୍ୟାଙ୍କମାନଙ୍କରେ ଗଚ୍ଛିତ କରିସାରିଥିଲେ। ଇରାନରେ ଆୟୋତାଲା ଖୋମିନଙ୍କ ବିଦ୍ରୋହ ପରେ ପରେ ଶାହା ସପରିବାରେ ୧୯୭୯ ଜାନୁୟାରୀରେ ଇରାନ ଛାଡ଼ିବାକୁ ବାଧ୍ୟ ହେଲେ। ପରେ ପରେ ସେ ଆଶ୍ରୟ ପାଇଁ ଜାଗାକୁ ଜାଗା ଘୁରି ବୁଲିଛନ୍ତି। ସ୍ୱିଜରଲାଣ୍ଡ, ଆମେରିକା, ମିଶରରେ ସେ ଆଶ୍ରୟ ନେଇଥିଲେ। ଦୁର୍ଭାଗ୍ୟକୁ ସେ ମିଶରରେ ତାଙ୍କର ପ୍ରଥମ ପତ୍ନୀ ଫଜିଆଙ୍କ ପ୍ରାସାଦରେ ଆଶ୍ରୟ ନେଇଥିଲେ। ଅବଶ୍ୟ ସେତେବେଳକୁ ଫଜିଆ ପୁନର୍ବିବାହ କରି କାଏରୋଠାରେ ରହୁଥିଲେ। ଏହି ଆଶ୍ରୟ କିନ୍ତୁ ଫାରାଙ୍କୁ ଖୁବ୍ ବାଧିଥିଲା।

ଶାହା କର୍କଟ ରୋଗରେ ପୀଡ଼ିତ ହେଲେ। ଇତ୍ୟବସରରେ ଫାରାଙ୍କ ସମ୍ପର୍କ ଗଢ଼ିଉଠିଲା ଇରାନର ପୂର୍ବତନ ଏୟାର ମାର୍ଶାଲ ହମିଦ ସେରଭାନଙ୍କ ସହିତ। ପ୍ୟାରିସ୍‌ଠାରେ ସେମାନେ ଗୋଟିଏ ହୋଟେଲରେ ଗୋଟିଏ ରୁମରେ ରହୁଥିଲେ। ସେତେବେଳେ ଗୁଜବ ହେଲା ଯେ ହାମିଦ୍-ଫାରା ଗୁପ୍ତ ବିବାହ କରିଛନ୍ତି। ଘଟଣାଟି ଶାହାଙ୍କ କାନ ପାଖରେ ପହଞ୍ଚିଲା। ଶାହା କୈଫତ୍ ମାଗିଲାବେଳେ ଫାରା ତାଙ୍କୁ ଅଲଗା ହୋଇଯିବା ପାଇଁ ଧମକ ଦେଲେ। ଦୁଃଖ

ଅବଶୋଷ ଭିତରେ ଶାହା ୧୯୮୦ ଜୁଲାଇ ୨୭ରେ ଶେଷ ନିଶ୍ୱାସ ତ୍ୟାଗ କଲେ। ୪୨ ବର୍ଷ ବୟସରେ ଫାରା ବିଧବା ହେଲେ।

ଶାହାଙ୍କ ମୃତ୍ୟୁ ପରେ ପରେ ଫାରା ମୁକ୍ତ ହୋଇଗଲେ। ଏଣିକି ଅବାଧରେ ତାଙ୍କର ପ୍ରେମ ସମ୍ପର୍କ ହମିଦଙ୍କ ସହ ଗଢ଼ିଉଠିଲା। ସେ ତାଙ୍କର ଅଧିକାଂଶ ସମୟ ୟୁରୋପରେ ବିଶେଷ କରି ପ୍ୟାରିସରେ କଟାଇଲେ। ଶାହାଙ୍କ ମୃତ୍ୟୁ ପରେ ହମିଦଙ୍କ ସହ ଫାରାଙ୍କ ସମ୍ପର୍କ ଯୋଗୁଁ ଶାହାଙ୍କ ବଡ଼ ପୁଅ ରେଜା ଶାହା କ୍ଷୁବ୍ଧ ହୋଇଥିଲେ। ଦୀର୍ଘ ଦୁଇ ବର୍ଷ ଧରି ମା' ପୁଅଙ୍କ ମଧ୍ୟରେ ମନୋମାଳିନ୍ୟ ଲାଗି ରହିଥିଲା। ୧୯୮୨ ମସିହାରେ ରେଜା ଶାହା ମା'ଙ୍କୁ ଛାଡ଼ି ମରକୋ ଚାଲିଆସିଲେ। କିଛିକାଳ ପରେ ଫାରା ତାଙ୍କର ଅନ୍ୟ ତିନୋଟି ପିଲାଙ୍କୁ ଧରି ଆମେରିକା ଚାଲି ଯାଇଥିଲେ। ସେଠାରେ ତାଙ୍କର ପିଲାମାନେ ପଢ଼ିଲେ। ନିୟୁର୍କ ଏବଂ ପ୍ୟାରିସ୍ ମଧ୍ୟରେ ଫାରା ତାଙ୍କର ଅବସ୍ଥାକୁ ସୀମିତ କରି ରଖିଛନ୍ତି। ହମିଦ୍ ଏବଂ ଫାରାଙ୍କ ସମ୍ପର୍କ ଏବେବି ଅତୁଟ ରହିଛି। ଏବେବି ତାଙ୍କ ଜୀବନାନୁଭୂତି ମଧ୍ୟ ଅସମ୍ପୂର୍ଣ୍ଣ। ବୈଧବ୍ୟ ତାଙ୍କୁ ତିଳେ ମାତ୍ର ସ୍ପର୍ଶ କରିନାହିଁ। ଆଜି ସେ ପୂର୍ବ ଭଳି ରାଣୀ ପରି ଜୀବନ ବିତାଇ ଚାଲିଛନ୍ତି। ତାଙ୍କ ପାଖରେ ଅଛନ୍ତି ପୁଅ ଝିଅ ଆଲିରାଜା, ଫରନାଜ୍ ଆଉ ଲଏଲା। ପ୍ୟାରିସ୍‌ର ଆକାଶରେ ସେ ହେଉଛନ୍ତି ଜଣେ ଧନାଢ୍ୟ ଲଳନା। ଜୀବନକୁ ଉପଭୋଗ ଆଉ ପ୍ରାଚୁର୍ଯ୍ୟ ଭିତରେ ଯେମିତି ସେ ବାନ୍ଧି ରଖିଛନ୍ତି, ବିଶ୍ୱରେ ଏମିତି ଆଉ ଏକ ଉଦାହରଣ ମିଳିବା କଠିନ....। ବୟସର ଉତ୍ତୀର୍ଣ୍ଣ ଶ୍ରାବଣରେ ଏବେ ବି ସେ ଉଡୁଛନ୍ତି ଖିଆଲି ଦୁନିଆରେ....।



# ପ୍ରେମ, ପିଆଲା ଓ ପୁରୁଷ ସନ୍ଧାନୀ ନାରୀ

(ଫିଲିପାଇନ୍‌ସ)

୧୯୫୪ ମସିହାର ଘଟଣା । ମାନିଲାରେ ଫିଲିପାଇନ୍‌ସ କଂଗ୍ରେସର ଲୋୟର ହାଉସରେ କୌଣସି ଏକ ଘଟଣାକୁ ନେଇ ଖୁବ୍ ସରଗରମ ଆଲୋଚନା ଚାଲିଥାଏ । ବିରୋଧୀଦଳ ପକ୍ଷରୁ ଫର୍ଡ଼ିନାଣ୍ଡ ମାର୍କସ ଶାସକ ଦଳକୁ ଅତି ନିର୍ମମ ଭାବରେ ସମାଲୋଚନା କରି ଚାଲିଥାନ୍ତି । ଭେଟିଂହଲରେ ବସି କାର୍ଯ୍ୟକାରୀ ବାଚସ୍ପତିଙ୍କ ସହଧର୍ମିଣୀ ଏବଂ ତାଙ୍କର ଝିଆରୀ ଇମେଲଡ଼ା ରୋମୁଅଲଡେଜ ବିରୋଧୀଦଳର ଏହି ସଦସ୍ୟଙ୍କ ବାକ୍‌ଭଙ୍ଗୀକୁ ତାରିଫ କରି ଚାଲିଥାନ୍ତି । ମାର୍କସସ୍ ନିଜର ଭଏସ୍ ପାଇଁ ସାରା ଫିଲିଫାଇନ୍‌ସରେ ଭଲଭାବରେ ପରିଚିତ ହୋଇସାରି ଥାଆନ୍ତି । ଜାପାନର ଗରିଲାମାନଙ୍କ ବିରୁଦ୍ଧରେ ଲଢ଼େଇ କରି ବେଶ୍ ସୁନାମ ଅର୍ଜନ କରି ସାରିଥାନ୍ତି ଫର୍ଡ଼ିନାଣ୍ଡ । ଦେଶର ଯୁବସମାଜର ସେ ଥିଲେ ଜଣେ ବନ୍ଦନୀୟ ନେତା ।

> ଫର୍ଡ଼ିନାଣ୍ଡଙ୍କର ଆଖି ଦୁଇଟି ଖୋଜି ବୁଲୁଥିଲା ଜନଗହଳି ଭିତରେ ସେହି ନୀଳ ପରୀଟିକୁ ଯିଏ କି ବାରମ୍ବାର ତାଙ୍କୁ କଥା ଦେଇ କଥା ରଖୁନଥିଲା । ଫର୍ଡ଼ିନାଣ୍ଡ ଏହି ନୀଳ ପରୀ ସହିତ ମୁହୂର୍ତ୍ତଟିଏ କଟାଇବା ପାଇଁ ପାଗଳ ହୋଇ ଉଠୁଥିଲେ । ନିଜର ବନ୍ଧୁମାନଙ୍କ ଜରିଆରେ ଗୋପନ ସମ୍ପର୍କ ସ୍ଥାପନ ପାଇଁ ତତ୍ପର ହୋଇ ଉଠୁଥିଲେ । ଫର୍ଡ଼ିନାଣ୍ଡ ତାଙ୍କର ଯେତିକି ନିକଟତର ହେଉଥିଲେ ନୀଳ ପରୀଟି ସେତିକି ତାଙ୍କଠାରୁ ଦୂରେଇ ଯାଉଥିଲା । ବ୍ୟବଧାନ ପରେ ବି ନୀଳ ପରୀଟି ଏଇ ବିତର୍କିତ ପୁରୁଷଟିକୁ ଖୁବ୍ ଭଲ ପାଉଥିଲା । ସେ ଚାହୁଁ ନଥିଲା ଫର୍ଡ଼ିନାଣ୍ଡଙ୍କୁ ବିବାହ କରି ତାଙ୍କ ପିଲାର ଜନନୀ ହେବାକୁ, ସେ ଚାହୁଁଥିଲା ଆଉ କିଛି...ଆଶାଠାରୁ ଅଧିକ... ।

ଫର୍ଡ଼ିନାଣ୍ଡଙ୍କ ସମ୍ପର୍କରେ ଇମେଲଡ଼ା ବହୁବାର ଶୁଣିଥିଲେ । କେବେ ପାଖରୁ ଦେଖିବାର ସୁଯୋଗ ସେ ପାଇ ନଥିଲେ । ହଲ୍ ଭିତରେ ପ୍ରବଳ ମଶା ହେବାରୁ ଇମେଲଡ଼ା ଏବଂ ତାଙ୍କର ସମ୍ପର୍କୀୟ ମଶା ଦାଉରୁ ରକ୍ଷା ପାଇବା ପାଇଁ ଆଶ୍ରୟ

ନେବା ପାଇଁ 'ହାଉସ୍ କ୍ୟାଫ୍ଟେରିଆ' ଭିତରକୁ ଆସିଥିଲେ। ସେତେବେଳକୁ ମାର୍କସଙ୍କ ଡିବେଟ ସରିଯାଇଥିବାରୁ ସେ ମଧ୍ୟ ଏହି ସ୍ଥାନକୁ ଆସିଥାନ୍ତି। କିଛି ସମୟ ପାଇଁ ମାର୍କସ ଏହି ସୁନ୍ଦରୀ ତରୁଣୀଟିକୁ ଦେଖି ସ୍ତବ୍ଧ ହୋଇ ଯାଇଥିଲେ। ସେତେବେଳକୁ ଇମେଲଡ଼ା ମଧ୍ୟ ନିଜର ସୌନ୍ଦର୍ଯ୍ୟ ପାଇଁ ବହୁ ଚର୍ଚ୍ଚାର ପରିସର ମଣ୍ଡନ କରିପାରିଥାନ୍ତି। ସେ ବର୍ଷ ମଧ୍ୟ ସେ ମିସ୍ ମାନିଲା ହୋଇଥାନ୍ତି ! ତେଣୁ ସମସ୍ତେ ତାଙ୍କୁ ଜାଣିଥାନ୍ତି।

ମାର୍କସ୍ ପଦୁଟିଏ କଥା ହେବା ପାଇଁ ବ୍ୟାକୁଳ ହୋଇ ଉଠୁଥିଲେ। ସେ ଚାହୁଁଥିଲେ କେହି ଜଣେ ତାଙ୍କୁ ଏଇ ତରୁଣୀଟି ସହିତ ପରିଚୟ କରାଇଦେଉ। ମାତ୍ର ଏହା ସମ୍ଭବ ନ ହେବାରୁ ନିଜେ ମାର୍କସ୍ ଅଭିବାଦନ ଜଣାଇ ଇମେଲଡାଙ୍କୁ କହିଥିଲେ - ଇମେଲଡା, ମୁଁ ଫର୍ଡ଼ିନାଣ୍ଡ ମାର୍କସ୍। ଇମେଲଡା ସେଇଠି ବସିକରି ତାଙ୍କୁ ଅଭିବାଦନ ଜଣାଇଥିଲେ। ମାର୍କସ୍‌ଙ୍କ ଅନୁରୋଧରେ ସେ ଠିଆହେବା ଅବସରରେ ଫର୍ଡ଼ିନାଣ୍ଡ ଏହି ତରୁଣୀଟି ପାଞ୍ଚ ଫୁଟ ଆଠ ଇଞ୍ଚ ହେବ କଳନା କରି ନେଇଥିଲେ। ବାସ୍ ଏଇ ଏତିକି ଥିଲା ସେମାନଙ୍କର ପ୍ରଥମ ସାକ୍ଷାତ। ଏଇ ସ୍ୱଳ୍ପ ସମୟ ବ୍ୟାପି ସାକ୍ଷାତ ମଧ୍ୟରେ ଉଭୟ ପରସ୍ପର ପ୍ରତି ଆକର୍ଷିତ ହୋଇଥିଲେ। ପାର୍ଥକ୍ୟ ଥିଲା ମାର୍କସ ଏସବୁ ପ୍ରକାଶ କରିପାରୁଥିବା ବେଳେ ଇମେଲଡା ନିଜଭିତରେ ସେସବୁକୁ ଗୋପନ ରଖିଥିଲେ। ପରେ ପରେ ଇମେଲଡାଙ୍କ ପାଖକୁ ଏଇ ସମ୍ପର୍କ ନେଇ ବହୁ ଫୋନ ଆସେ। ନିଜ ଭିତରେ କୁରୁଳି ଉଠନ୍ତି ଏଇ ତରୁଣୀ ଜଣକ। କିନ୍ତୁ ତାଙ୍କ ହାବଭାବରୁ ଜଣାଯାଏ, ସେ ଯେମିତି ଅତିମାତ୍ରାରେ ପୁରୁଷଙ୍କୁ ଘୃଣା କରନ୍ତି। ପରେ ପରେ ମାର୍କସ ତାଙ୍କ ସହ କଥାବାର୍ତ୍ତା ହେବା ପାଇଁ ବହୁବାର ଚେଷ୍ଟା କରିଛନ୍ତି। ପ୍ରତିଥର ଏଇ ବୁଦ୍ଧିମତୀ ତରୁଣୀ ଜଣକ ତାଙ୍କୁ ଆଭଏଡ୍ କରନ୍ତି। କାରଣ ସେ ତାଙ୍କ ଶିକାରକୁ ଖେଳେଇ ଖେଳେଇ ଉପଭୋଗ କରିବାକୁ ଚାହାନ୍ତି। ଦିନେ ମାର୍କସ ଜାଣିଲେ ଯେ ଇମେଲଡା ହଂକଂ ଗସ୍ତରେ ଯାଉଛନ୍ତି। ସେ ସାଙ୍ଗେ ସାଙ୍ଗେ ନିଜ ପାଇଁ ହଂକଂକୁ ଟିକଟ କରି ବିମାନ ବନ୍ଦରଠାରେ ପହଞ୍ଚି ଜାଣିବାକୁ ପାଇଲେ ଯେ ଇମେଲଡା ବାଗୁଇଓ ପାଇଁ ଟିକେଟ କରିଛନ୍ତି। ସେ ମଧ୍ୟ ନିଜ ଟିକେଟ କ୍ୟାନସଲ କରି ବାଗୁଇଓ ଅଭିମୁଖେ ଟିକେଟ କଲେ। ବାଗୁଇଓଠାରେ ଉଭୟ ପରସ୍ପରର ନିକଟତର ହୋଇ ପାରିଥିଲେ।

ତରୁଣୀକୁ ଫାଶରେ ପକାଇବା ପାଇଁ ଫର୍ଡିନାଣ୍ଡଙ୍କୁ ବହୁ ପ୍ରକାର ଅଭିନୟଠାରୁ ଆରମ୍ଭ କରି ଅର୍ଥ ବ୍ୟୟ କରିବା ପର୍ଯ୍ୟନ୍ତ ସବୁ କିଛି କରିବାକୁ ପଡ଼ିଛି।

ଗସ୍ତରୁ ଫେରିବାର କିଛି ଦିନ ପରେ ଉଭୟଙ୍କ ବିବାହ ଏକ ଚର୍ଚ୍ଚରେ ସମାପନ ହେଲା। ସେତେବେଳକୁ ଇମେଲଡାଙ୍କୁ ୨୪ ବର୍ଷ ଏବଂ ତାଙ୍କ ସ୍ୱାମୀଙ୍କୁ ୩୬ ବର୍ଷ। ସେ ତିନୋଟି ସନ୍ତାନର ଜନନୀ ହୋଇପାରିଥିଲେ। ୧୯୫୬ରେ ଇମି (ଝିଅ) ୧୯୫୯ରେ ଫର୍ଡ଼ିନାଣ୍ଡ - ୨ୟ (ପୁଅ) ଏବଂ ୧୯୬୧ରେ ଇରିନ (ଝିଅ) ଜନ୍ମ ହୋଇଥିଲେ। ମାତ୍ର ଇମେଲଡା ସ୍ୱାମୀ-ସନ୍ତାନ ପରିବାର ମଧ୍ୟରେ ନିଜକୁ ବାନ୍ଧି ରଖିବାକୁ ଚାହୁଁ ନଥିଲେ। ସେ ଚାହିଁଥିଲେ ଆହୁରି ଅଧିକ କିଛି। ୧୯୬୫ ନଭେମ୍ବରରେ ତାଙ୍କ ସ୍ୱାମୀ ରାଷ୍ଟ୍ରପତି ପାଇଁ ପ୍ରାର୍ଥୀ ହେଲେ। ଏଇ ସମୟରେ ଇମେଲଡାଙ୍କୁ ବହୁ ପରିଶ୍ରମ କରିବାକୁ ପଡ଼ିଛି। ନିର୍ବାଚନ ପ୍ରଚାର ବେଳେ ଫର୍ଡ଼ିନାଣ୍ଡ ନିଜ ସ୍ତ୍ରୀର ସୌନ୍ଦର୍ଯ୍ୟର ତାରିଫ କରି ଫିଲିପାଇନ୍‌ସବାସୀଙ୍କୁ ଭୁଆଁ ବୁଲାଇ ରାଷ୍ଟ୍ରପତି ହୋଇଥିଲେ। ନିର୍ବାଚନ ସଭାମାନଙ୍କରେ ସେ ନିଜ ସ୍ତ୍ରୀର କାନ୍ଧରେ ହାତ ପକାଇ କହୁଥିଲେ "ମୁଁ ମୋର ସବୁକିଛି ଆପଣମାନଙ୍କୁ ଦେବାକୁ ପ୍ରସ୍ତୁତ, କେବଳ ମୋ ସ୍ତ୍ରୀକୁ ଛାଡ଼ି।" ଏଇ କେତୋଟି ରସରସିଆ ବାକ୍ୟ ଏବଂ ଇମେଲଡାଙ୍କ ରୂପ ହିଁ ବିଜୟର ବାର୍ତ୍ତା ବହନ କଲା। ଅବଶ୍ୟ ନିର୍ବାଚନ ସମୟରେ ଫର୍ଡ଼ିନାଣ୍ଡଙ୍କୁ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା।

ଫର୍ଡ଼ିନାଣ୍ଡ ମାର୍କସ ନିର୍ବାଚନରେ ବିଜୟ ଲାଭ କରି ଫିଲିପାଇନ୍‌ସର ରାଷ୍ଟ୍ରପତି ହେଲେ। ତେଣୁ ଇମେଲଡା ହେଲେ ଫିଲିପାଇନ୍‌ସର ଫାଷ୍ଟଲେଡି।

ଫର୍ଡ଼ିନାଣ୍ଡ ନିଜ ସ୍ତ୍ରୀକୁ ଗୁପ୍ତଅସ୍ତ୍ର ଭାବେ ବ୍ୟବହାର କରୁଥିଲେ ଏବଂ କାର୍ଯ୍ୟରେ ସଫଳ ହେଉଥିଲେ। ୧୯୭୩ରେ ଦେଶରେ ତୈଳ ଧର୍ମଘଟ ବେଳେ ଇମେଲଡା ପଶ୍ଚିମ ଏସିଆର ତୈଳ ଉତ୍ପାଦନକାରୀ ଦେଶମାନଙ୍କୁ ଭେଟି ଫିଲିପାଇନ୍‌ସକୁ ତୈଳ ଆମଦାନୀର ବାଟ ଫିଟାଇ ପାରିଥିଲେ। ସବୁଠି ଭଲ କାମ ଦେଇଥିଲା ଇମେଲଡାଙ୍କ ଅନିନ୍ଦ୍ୟ ସୁନ୍ଦର ରୂପମାଧୁରୀ। ସେ ମଧ୍ୟ ଅନେକ କାର୍ଯ୍ୟରେ ସ୍ୱାମୀଙ୍କୁ ସାହାଯ୍ୟ କରୁଥିଲେ। ଫର୍ଡ଼ିନାଣ୍ଡ ତାଙ୍କ କଥା ମାନିବାକୁ ବାଧ୍ୟ ହେଉଥିଲେ। ୧୯୭୪ରେ ଇମେଲଡା ଚୀନ ଗସ୍ତରେ ଯାଇଥିବା ବେଳେ

ବେଜିଂଠାରେ ଚେୟାରମ୍ୟାନ ମାଓଙ୍କ ସହିତ ହାଣ୍ଡସେକ୍ କରି ଏକ ଫଟୋ ଉଠାଇଥିଲେ, ଯାହା ସେ ସମୟରେ ଆନ୍ତର୍ଜାତିକ ସମ୍ବାଦପତ୍ରମାନଙ୍କରେ ବେଶ୍ ଚର୍ଚ୍ଚାର ବିଷୟ ହୋଇ ଉଠିଥିଲା ।

ସେ ମାନିଲା ମେଟ୍ରୋପଲିଟାନ୍‌ର ଗଭର୍ଣ୍ଣର ଭାବେ ନିଯୁକ୍ତ ହୋଇଥିଲେ ଏଇ ସମୟରେ ସେ ମନଇଛା କ୍ଷମତାର ଅପବ୍ୟବହାର କରିଥିଲେ । ବହୁ ଅର୍ଥ ବ୍ୟୟ କରି ସେ ନାନା ପ୍ରକାର ପ୍ରୋଜେକ୍ଟ ଆରମ୍ଭ କରିଥିଲେ । ଏଥିରୁ ସେ ବହୁ ଅର୍ଥ ଆତ୍ମସାତ କରିଥିଲେ । ସୁଇଜରଲାଣ୍ଡ ଏବଂ ଆମେରିକା ବ୍ୟାଙ୍କରେ ସେ ତାଙ୍କର କମିଶନ ଟଙ୍କା ଜମା ରଖୁଥିଲେ । ବିଶ୍ୱର ଯେଉଁ ୧୦ ଜଣ ଧନୀ ମହିଳା ମାନ୍ୟତା ପାଇଥିଲେ, ସେମାନଙ୍କ ମଧ୍ୟରେ ସେ ମଧ୍ୟ ଥିଲେ । ମୂଲ୍ୟବାନ ଅଳଙ୍କାର, ଜୁଏଲ ଏବଂ ଡାଏମଣ୍ଡ ଆଦି ରଖିବାରେ ସେ ଏଲିଜାବେଥ୍ ଟେଲରଙ୍କୁ ଅତିକ୍ରମ କରି ଯାଇଥିଲେ । ଇମେଲଡା ବିଶ୍ୱରେ ବେଶ୍ ଜଣାଶୁଣା ଥିଲେ ପ୍ରେମ, ଦାମୀ ପୋଷାକ ଏବଂ ଜୋତା ସଂଗ୍ରହ କରି ରଖିଥିବା ଯୋଗୁଁ । ୧୯୭୪ରେ ସେ ସରକାରୀ ପାଣ୍ଠି ବରବାଦ୍ କରି ମିସ୍ ୟୁନିଭର୍ସ ପ୍ରତିଯୋଗିତାର ଆୟୋଜନ କରିଥିଲେ । ବହୁ କ୍ଷେତ୍ରରେ ସେ ସରକାରୀ ପାଣ୍ଠି ଆତ୍ମସାତ୍ କରି ବିଦେଶୀ ବ୍ୟାଙ୍କରେ ଡିପୋଜିଟ କରିଥିଲେ । ଫର୍ଡ଼ିନାଣ୍ଡ ନିଜପାଇଁ ଯେଉଁ ଯେଉଁ ରାଷ୍ଟ୍ରପତି ଭବନ ତିଆରି କରିଥିଲେ, ତାହା ଏବେ ଦର୍ଶକମାନଙ୍କ ପାଇଁ ଉନ୍ମୁକ୍ତ ହୋଇଛି । କାରଣ ଦର୍ଶକମାନେ ଜାଣିପାରିବେ ଯେ ମାର୍କସ ପରିବାର କିପରି ଦେଶର ସମ୍ପତ୍ତିକୁ ଲୁଟ୍ କରୁଥିଲେ । ନୂତନ ରାଷ୍ଟ୍ରପତି ମିସେସ୍ କୋରାକନ ଆକିନୋ ରାଷ୍ଟ୍ରପତି ଭବନରେ ନ ରହି ଅନ୍ୟତ୍ର ରହୁଛନ୍ତି ।

ଇମେଲଡା ବାରମ୍ବାର ବିଦେଶ ଗସ୍ତରେ ଯାଉଥିଲେ । ତାଙ୍କ ଗସ୍ତରେ ବହୁ ପରିମାଣରେ ସରକାରୀ ଅର୍ଥ ଖର୍ଚ୍ଚ ହେଉଥିଲା । ବିଦେଶରେ ଥାଇ ମଧ୍ୟ ଇମାଲଡାଙ୍କ ଚାକର ପୂଜାରୀଙ୍କ ସଂଖ୍ୟା ଥିଲା ଯଥେଷ୍ଟ । ଫିଲିପାଇନ୍‌ସକୁ ଲୁଟିଥିବାରୁ ଫର୍ଡ଼ିନାଣ୍ଡଙ୍କ ବିରୁଦ୍ଧରେ ପ୍ରବଳ ଜନ ଆନ୍ଦୋଳନ ହେଲା । ୧୯୮୬ ଫେବୃୟାରୀରେ ମାର୍କସ ପରିବାର ଦେଶରୁ ବିତାଡ଼ିତ ହେଲେ । ନୂତନ ରାଷ୍ଟ୍ରପତି ହେଲେ ମିସେସ୍ କୋରାକନ ଆକିନୋ । ନିର୍ବାସନରେ ଥିବା ଅବସ୍ଥାରେ ଫର୍ଡ଼ିନାଣ୍ଡଙ୍କ ମୃତ୍ୟୁ ହେଲା । ଫିଲିପାଇନ୍‌ସ କର୍ତ୍ତୃପକ୍ଷ ନିଜ ଦେଶରେ ତାଙ୍କ ଶବ ସଂସ୍କାର ପାଇଁ

ଅନୁମତି ଦେଇ ନଥିଲେ। ଇମେଲଡାଙ୍କ ମନରେ ଏହା ଭୀଷଣ ଆଘାତ ସୃଷ୍ଟି କରିଥିଲା। ସେ ଏବେ ବି ସ୍ୱପ୍ନ ଦେଖୁଛନ୍ତି। ଦିନେ ନା' ଦିନେ ଫିଲିପାଇନ୍ସବାସୀ ତାଙ୍କୁ ରାଷ୍ଟ୍ରପତି ଭାବେ ନିର୍ବାଚିତ କରିବେ।

୧୯୯୧ ନଭେମ୍ବର ୪ ତାରିଖରେ ଇମେଲଡା ନିଜ ଦେଶକୁ ଫେରିଥିଲେ। କଳା ପୋଷାକ ପରିହିତ ଏହି ମହିଳାଙ୍କୁ ହଜାର ହଜାର ନାଗରିକ ସ୍ୱାଗତ କରିଥିଲେ। ନିଜ ମାଟିରେ ପହଞ୍ଚି ଇମେଲଡାଙ୍କ ଆଖିରୁ ଝରୁଥିଲା ଆନନ୍ଦାଶ୍ରୁ। ୬୨ ବର୍ଷିଆ ଏହି ମହିଳା ନିଜ ପୁଅ କାନ୍ଧରେ ମଥା ରଖି ଜନ ସ୍ରୋତ ମଧ୍ୟରେ ଆଗେଇ ଯାଉଥିଲେ। ହନଲୁଲୁଠାରୁ ଦଶ ଘଣ୍ଟାର ବିମାନ ଯାତ୍ରା ପରେ ଇମେଲଡାଙ୍କ ଜେଟ୍ ମାନିଲାରେ ପହଞ୍ଚିଥିଲା। ଫିଲିଫାଇନ୍ସ ସରକାର ତାଙ୍କୁ ଗିରଫ କରି ପରେ ଜାମିନିରେ ଛାଡ଼ିଥିଲେ। ତାଙ୍କ ବିରୁଦ୍ଧରେ ସରକାର ପ୍ରାୟ ୬୦ ଟି ଯାଏ କେଶ୍ ଦାଏର କରିଛନ୍ତି। ସମ୍ଭବତଃ ଏହିସବୁ କେଶ୍‌ର ବିଚାର ଏବଂ ଦଣ୍ଡ ଭିତରେ ତାଙ୍କର ବାକି ଜୀବନ ଅତିବାହିତ ହୋଇଯିବ। ମାର୍କସଙ୍କ ୨୧ ବର୍ଷର ଶାସନକାଳ ମଧ୍ୟରେ ଏକଦା ବିପୁଳ କ୍ଷମତାର ଅଧିକାରିଣୀ ଆଜି ସପରିବାରେ ବିଚାରର ସମ୍ମୁଖୀନ, ସମୟ ହିଁ ତାଙ୍କ ଭାଗ୍ୟର ମୀମାଂସା କରିବ।



# ଅପରାହ୍ନର ଡାଫୋଡିଲ ମାର୍ଗାରେଟ (ଇଂଲଣ୍ଡ)

ସେ କେବଳ ରାଜା ଷଷ୍ଠ ଜର୍ଜଙ୍କର କନିଷ୍ଠ କନ୍ୟା ନୁହନ୍ତି , ଇଂଲଣ୍ଡର ରାଣୀ ଏଲିଜାବେଥ୍ (୨ୟ)ଙ୍କର ସାନଭଉଣୀ ନୁହନ୍ତି, ତାଙ୍କର ଆଉ ଏକ ବିଶେଷ ପରିଚୟ ହେଲା, ସେ ହେଉଛନ୍ତି ବିଶ୍ୱର ଜଣେ ନମ୍ବରଦ୍ୱାନ୍ ରୋମାଣ୍ଟିକ୍ ପ୍ରିନ୍‌ସେସ। ଏହି ଅନିନ୍ଦ୍ୟ ସୁନ୍ଦରୀ ରାଜକନ୍ୟାଙ୍କ ନାମ ମାର୍ଗାରେଟ। ମାର୍ଗାରେଟଙ୍କ ବଂଶପରମ୍ପରାରେ ପ୍ରେମ ପାଇଁ ବଳିଦାନ କିଛି ନୂଆ କଥା ନୁହେଁ।

> ବୟସର ଭାର ତାଙ୍କ ଶରୀରର ଚର୍ମକୁ ଶ୍ଳଥ କରିଦେଇଛି। ବାରମ୍ବାର ଧୋକ୍କା, ତାଙ୍କ ସାମାଜିକ ସ୍ଥିତିକୁ ଦୋହଲାଇ ଦେଇଛି। ତଥାପି ସେ ଭାଙ୍ଗିପଡ଼ି ନାହାନ୍ତି। ବୟସର ଅପରାହ୍ନରେ ମଧ୍ୟ ତାଙ୍କ ଭିତରେ ଅଫୁରନ୍ତ ପ୍ରେମର ଜୁଆର ଦେଖାଦେଇଛି। ନାତି ନାତୁଣୀଙ୍କ ସହ ଏକ ସୁସ୍ଥ ପରିବେଶ ଭିତରେ ରହୁଥିବା ଏଇ ନାରୀଜଣକ ଉତ୍ତୀର୍ଣ୍ଣ ବୟସରେ ପଦାର୍ପଣ କରିଥିଲେ ମଧ୍ୟ ନବୀନ ଯୁବକମାନଙ୍କ ସଙ୍ଗ ସୁଖ ଭୁଲିପାରୁ ନଥିଲେ.....।

୧୯୩୬ ମସିହାର ଘଟଣା। ସେଦିନ ଇଂଲଣ୍ଡ ରାଜା ଅଷ୍ଟମ ଏଡ୍‌ୱାର୍ଡ ସିଂହାସନ ଛାଡ଼ିବାକୁ ବାଧ୍ୟ ହୋଇଥିଲେ। ତାଙ୍କର ଅପରାଧ ଥିଲା, ସେ ଭଲ ପାଇଥିଲେ ଜଣେ ସ୍ୱାମୀ ପରିତ୍ୟକ୍ତା ଆମେରିକୀୟ ମହିଳା ୱାଲିସ୍ ୱାରଫିଲଡ ସିମ୍ପସନଙ୍କୁ। ଏଡୱାର୍ଡ ସିଂହାସନର ଉତ୍ତରାଧିକାରକୁ ହସି ହସି ଛାଡ଼ି ଦେଇଥିଲେ। କିନ୍ତୁ ପ୍ରେମକୁ ଛାଡ଼ିପାରି ନଥିଲେ। ଏଡୱାର୍ଡଙ୍କ ପରେ ତାଙ୍କ ସାନଭାଇ ଷଷ୍ଠଜର୍ଜ ଇଂଲଣ୍ଡର ସିଂହାସନ ଆରୋହଣ କରିଥିଲେ। ତାଙ୍କ ରାଣୀ ମେରୀ ଦୁଇଟି କନ୍ୟା ସନ୍ତାନଙ୍କୁ ଜନ୍ମ ଦେଇଥିଲେ ଏଲିଜାବେଥ୍ ଏବଂ ମାର୍ଗାରେଟ ରୋଜ୍। ପିତାଙ୍କ ପରେ ପରେ ଉତ୍ତରାଧିକାର ସୂତ୍ରରେ ଇଂଲଣ୍ଡ ସିଂହାସନର ଉତ୍ତରାଧିକାର ଗଲା ଏଲିଜାବେଥ୍‌ଙ୍କ ହାତକୁ। ଜଣେ ସାଧାରଣ ବୋହେମିଆର ଅଧିବାସୀ ଭଳି ଅପାଙ୍‌କ୍ତେୟ ହୋଇ ରହିଗଲେ ମାର୍ଗାରେଟ ରୋଜ୍, ଯଦିବା ସେ ଥିଲେ ଅନିନ୍ଦ୍ୟ ସୁନ୍ଦରୀ।

ଏହି ସାଧାରଣ ମାର୍ଗାରେଟ ଏକ ଅସାଧାରଣ ରୂପମାଧୁରୀର ଅଧିକାରିଣୀ ଥିଲେ। ବୟସ ବଢ଼ିବା ସଙ୍ଗେ ସଙ୍ଗେ ଡାଫୋଡିଲର ଗନ୍ଧ ତାଙ୍କ

ଭିତରେ ମହକି ଉଠୁଥିଲା । ତେଣୁ ସେ ଆନମନା ହେବା ସ୍ୱାଭାବିକ୍ । ତାଙ୍କ ନେଇ ସୃଷ୍ଟି ହେଲା ଅନେକ ରୋମାଣ୍ଟିକ କାହାଣୀ । ସମ୍ରାଟ ଷଷ୍ଠ ଜର୍ଜଙ୍କର ବିଶେଷ ପରିଚିତ ଦ୍ୱିତୀୟ ବିଶ୍ୱଯୁଦ୍ଧର ବହୁଚର୍ଚ୍ଚିତ ହିରୋ କ୍ୟାପଟେନ ପିଟରଟାଉନସେଣ୍ଡକୁ ନେଇ ଗଢ଼ି ଉଠିଲା ମାର୍ଗାରେଟଙ୍କ ଜୀବନର ପ୍ରଥମ ରୋମାଣ୍ଟିକ କାହାଣୀ । ମାର୍ଗାରେଟ ମନେ ମନେ ସ୍ଥିର କରିନେଲେ ଟାଉନସେଣ୍ଡଙ୍କୁ ବିବାହ କରିବା ପାଇଁ । କିନ୍ତୁ ଚର୍ଚ୍ଚ ଅଫ୍ ଇଂଲଣ୍ଡର ମୁଖ୍ୟ ହିସାବରେ ତାଙ୍କ ବଡ଼ଭଉଣୀ ଏଲିଜାବେଥ୍ ଏ ବିବାହକୁ ସ୍ୱୀକୃତି ଦେଲେନାହିଁ । ଜୀବନର ପ୍ରଥମ ଧୋକ୍କାର ସମ୍ମୁଖୀନ ହେଲେ ମାର୍ଗାରେଟ ୧୯୪୦ ପାଖାପାଖି ।

ପ୍ରେମରେ ଅନ୍ଧ ଥିଲେ ମାର୍ଗାରେଟ । ପ୍ରେମିକ ପାଇଁ ସେ ରାଜକୀୟ ପଦମର୍ଯ୍ୟାଦାକୁ ଏଡ଼ାଇ ଯିବାକୁ ପ୍ରସ୍ତୁତ ହୋଇଥିଲେ । ତାଙ୍କର ଆଦର୍ଶ ଥିଲେ ପିତୃବ୍ୟ ଅଷ୍ଟମ ଏଡୱାର୍ଡ । ମାତ୍ର ମା' ମେରୀଙ୍କ ପରାମର୍ଶ ମାନି ମାର୍ଗାରେଟ ବ୍ରିଟିଶ ସିଂହାସନ ବା ରାଜପରିବାର ସହିତ ସମ୍ପର୍କ ଛିନ୍ନ କରି ନଥିଲେ । ୧୯୫୫ରେ ସେ ଟାଉନସେଣ୍ଡଙ୍କୁ ପରିତ୍ୟାଗ କରି ପୁଣି ଥରେ ବ୍ରିଟିଶ ରାଜପରିବାର ଭିତରକୁ ଫେରି ଆସିଥିଲେ । ଅବଶ୍ୟ ଏଥିରେ ମେରୀଙ୍କର ପ୍ରଚ୍ଛନ୍ନ ହାତ ରହିଥିଲା । ଜୀବନର ଅବସାଦ ଭୁଲିବା ପାଇଁ ମାର୍ଗାରେଟ ନାଇଟ୍ କ୍ଲବମାନଙ୍କରେ ରାତି ରାତି ଧରି ନାଚୁଥିଲେ । ବୋହେମୀୟବାସୀଙ୍କ ଭିତରେ ଏ ଘଟଣା ଅନେକ ଚର୍ଚ୍ଚାର କେନ୍ଦ୍ରବିନ୍ଦୁ ହୋଇ ପଡ଼ିଥିଲା । ସେତେବେଳକୁ ଟାଉନସେଣ୍ଡ ଜଣୈକା ବେଲ୍ଜିଆନ ମହିଳାଙ୍କୁ ବିବାହ କରିସାରି ଥିଲେ ।

ମାର୍ଗାରେଟଙ୍କ ଜୀବନ ଆକାଶରେ ଅନେକ ନକ୍ଷତ୍ରର ଆବିର୍ଭାବ ହୋଇଥିଲା । ସେ କୌଣସି ଏକରେ ସନ୍ତୁଷ୍ଟ ହେଉ ନଥିଲେ । ଅନେକ ପୁରୁଷ ବନ୍ଧୁ ତାଙ୍କ ଜୀବନ ପରିସର ଭିତରକୁ ଆସିଥିଲେ । କିଛି ବର୍ଷ ପରେ ମାର୍ଗାରେଟ ଭଲପାଇ ବସନ୍ତି ଫଟୋଗ୍ରାଫର ଆଣ୍ଟୋନି ଆର୍ମଷ୍ଟ୍ରଙ୍ଗକୋନ୍‌ସଙ୍କୁ । ଜୋନ୍‌ସ ଜଣେ ବାରିଷ୍ଟରଙ୍କ ପୁତ୍ର ହେଲେ ମଧ୍ୟ ମାର୍ଗାରେଟଙ୍କ ଖୁସି ପାଇଁ ମେରୀ ଏ ବିବାହରେ ସମ୍ମତ ହୋଇଥିଲେ । ପୂର୍ବରୁ ନିଜ ଭଉଣୀର ସୁଖଶାନ୍ତିରେ ବାଧା ସୃଷ୍ଟି କରିଥିବା ରାଣୀ ଏଲିଜାବେଥ୍ ମଧ୍ୟ ଏଥର ଏ ବିବାହ ପାଇଁ ସ୍ୱୀକୃତି ଦେଇଥିଲେ । ବିବାହ ପୂର୍ବରୁ ଏକ ମୃଦୁ ଗୁଞ୍ଜରଣ ଶୁଣିବାକୁ ମିଳିଲା ଯେ ଜୋନ୍‌ସଙ୍କର ଜଣେ ଝୀନର

ମଡେଲଙ୍କ ସହିତ ସମ୍ପର୍କ ରହିଛି । ଅବଶ୍ୟ ଏ ବିବାହରେ ଏସବୁ ଘଟଣା କୌଣସି ପ୍ରକାର ବାଧା ସୃଷ୍ଟି କରିପାରି ନଥିଲା । ସୁଖରେ ବିତିଯାଇଥିଲା କିଛି ସମୟ ପାଇଁ ମାର୍ଗାରେଟଙ୍କ ଜୀବନ । ତାଙ୍କର ଦୁଇଟି ପୁତ୍ର-କନ୍ୟା ଜାତ ହୋଇଥିଲେ ୧୯୬୨ ଏବଂ ୧୯୬୫ ମସିହାରେ । ଡେଭିଡ ଭିସକାଉଣ୍ଟ ଲିନ୍ ଲି ଏବଂ ଲେଡି ସାରା ଆର୍ମଷ୍ଟ୍ରଙ୍ଗ ଜୋନ୍ସ ।

ଆଣ୍ଟୋନି, ଅନେକ ସମୟରେ ମାର୍ଗାରେଟଙ୍କ ଇଚ୍ଛା ବିରୁଦ୍ଧରେ କାର୍ଯ୍ୟ କରୁଥିଲେ । ଅନେକ ମହିଳାଙ୍କ ସହିତ ତାଙ୍କର ସମ୍ପର୍କ ଗଢ଼ିଉଠିଥିଲା । ତାଙ୍କ ସହିତ ରାତ୍ରିଯାପନ ପାଇଁ ଆଣ୍ଟୋନି ମଧ୍ୟ ଖୋଲାଖୋଲି ଭାବେ ଲଣ୍ଡନର ସୁନ୍ଦରୀମାନଙ୍କୁ ନିମନ୍ତ୍ରଣ କରୁଥିଲେ । ଆଣ୍ଟୋନିଙ୍କର ନଷ୍ଟଚରିତ୍ର ବିଷୟର ନମୂନା ସେତେବେଳକୁ ଇଂଲଣ୍ଡବାସୀ ଭଲଭାବେ ପାଇ ସାରିଥିଲେ । ଘଟଣାଟି ଖୁବ୍ ବାଧିଥିଲା ମାର୍ଗାରେଟଙ୍କୁ । ତାଙ୍କ ପଦମର୍ଯ୍ୟାଦାରେ ଏହା ଅନେକଟା ଆଞ୍ଚ ଆଣିଥିଲା । ଅବଶ୍ୟ ସେତେବେଳକୁ ମାର୍ଗାରେଟଙ୍କର ଅନେକ ପୁରୁଷଙ୍କ ସହିତ ସମ୍ପର୍କ ଗଢ଼ି ଉଠିଥିଲା ।

ମାର୍ଗାରେଟଙ୍କ ପ୍ରେମିକମାନେ ହେଲେ, ଫଟୋଗ୍ରାଫର ଲର୍ଡ ପାଟ୍ରିକ୍ ଲିଚ୍ ଫିଲଡ୍, ଡୋମିନିକ୍ ଏଲିଏଟ୍, ଡେରିକ୍ ହାର୍ଟ, ପିଟର ସେଲର୍ସ, ରବିନ୍ ଡଗଲାସ୍ ହୋମ ପ୍ରମୁଖ । ଅନେକ ରାତି ନାଇଟ୍ କ୍ଲବ୍‌ରେ ଲିଚ୍‌ଫିଲ୍‌ଡଙ୍କ ବାହୁରେ ହସ୍ତ ଛନ୍ଦି ନାଚିଛନ୍ତି । ମାର୍ଗାରେଟ ନିଜ ଘରକୁ ନିମନ୍ତ୍ରଣ କରିଛନ୍ତି ଏଲିଏଟ୍‌ଙ୍କୁ । ଆନ୍ତର୍ଜାତୀୟ ଖ୍ୟାତିସମ୍ପନ୍ନ ଚଳଚ୍ଚିତ୍ର ଅଭିନେତା ପିଟର୍ ସେଲର୍ସଙ୍କ ସହ ମାର୍ଗାରେଟଙ୍କ ସମ୍ପର୍କ କିଛି ସମୟ ପାଇଁ ବେଶ୍ ସରଗରମ ହୋଇଉଠେ । ମାର୍ଗାରେଟଙ୍କ ପାଇଁ ରବୀନ ଡଗଲାସ୍ ହୋମ୍ ଆତ୍ମହତ୍ୟା କରିବାକୁ ବାଧ୍ୟ ହୋଇଥିଲେ । ମୃତ୍ୟୁ ବେଳକୁ ରବୀନ୍‌ଙ୍କ ପାଖରେ ଥିଲା ମାର୍ଗାରେଟଙ୍କର ଅସୁମାରୀ ପ୍ରେମଚିଠି । ଏଗୁଡ଼ିକ ନିୟୁୟର୍କରେ ବହୁ ଦାମ୍‌ରେ ବିକ୍ରୟ ହେଉଥିଲା । ସମ୍ମାନର ପ୍ରଶ୍ନ ଥିବାରୁ ଆମେରିକାରେ ଥିବା ବ୍ରିଟିଶ ଆମ୍ବାସଡ଼ର ସେସବୁକୁ ସଂଗ୍ରହ କରି ନଷ୍ଟ କରିଦେଇଥିଲେ । ନିଜଠାରୁ ଅଳ୍ପ ବୟସର ଯୁବକମାନଙ୍କୁ ମଧ୍ୟ ମାର୍ଗାରେଟ ଭଲପାଇ ବସୁଥିଲେ । ଇଂଲଣ୍ଡରେ ତାଙ୍କୁ ସେକ୍ସ କୁଇନ୍ ଆଖ୍ୟା ଦିଆଯାଇଥିଲା ।

୧୯୭୩ରେ ମାର୍ଗାରେଟଙ୍କୁ ଯେତେବେଳେ ୪୩ ବର୍ଷ, ତାଙ୍କର ସମ୍ପର୍କ ଗଢ଼ିଉଠିଲା ୨୫ ବର୍ଷ ବୟସର ଅଲମ୍ପିକ ଗୋଲ୍ଡ ମେଡାଲ ବିଜେତା ରୋଡେରିକ୍ ଲେବଲିନ୍‌ଙ୍କ ସହିତ । ମାର୍ଗାରେଟ ରୋଡେରିକ୍‌ଙ୍କ ସହିତ ବହୁ ସ୍ଥାନରେ ଅନେକ ରାତ୍ରି କଟାଇଛନ୍ତି । ୧୯୭୬ରେ ମାର୍ଗାରେଟ ଏବଂ ରୋଡେରିକ୍‌ଙ୍କ କେତେକ ଆପତ୍ତିଜନକ ଫଟୋ ବ୍ରିଟିଶ ସମ୍ବାଦପତ୍ରମାନେ ପ୍ରକାଶ କରିବାରୁ ସେ ନେଇ ହାଉସ୍ ଅଫ୍ କମନ୍‌ସରେ ଆଲୋଚନା ହୋଇଥିଲା ଏବଂ ରାଜକୀୟ ସୁବିଧା ସୁଯୋଗ ଫେରାଇ ଦେବା ପାଇଁ ମଧ୍ୟ ପ୍ରସ୍ତାବ ଆସିଥିଲା । ରାଣୀ ଏଲିଜାବେଥ୍ ଏଥର ମଧ୍ୟ ନିଜ ଭଉଣୀଙ୍କୁ ଏକ ଆସନ୍ନ ବିପଦରୁ ରକ୍ଷା କରିଥିଲେ । ସେ ଏ ସମସ୍ତ ଘଟଣାର କାରଣ ଭାବେ ଆଣ୍ଟୋନୀଙ୍କୁ ଦାୟୀ କରିଥିଲେ । ବ୍ରିଟିଶ ସିଂହାସନରେ ପଦମର୍ଯ୍ୟାଦା ଦୃଷ୍ଟିରୁ ମାର୍ଗାରେଟ ମଧ୍ୟ ଆଣ୍ଟୋନୀଙ୍କୁ ଡାଇଭର୍ସ କରିପାରିଲେ ନାହିଁ । ଡାଇଭର୍ସ ନ କରିବା ପର୍ଯ୍ୟନ୍ତ ଦ୍ୱିତୀୟ ବିବାହ ମଧ୍ୟ ସମ୍ଭବ ନୁହେଁ । ଏଭଳି କଲେ ମାର୍ଗାରେଟଙ୍କୁ ସମସ୍ତ ସୁବିଧା ଏବଂ ପଦରୁ ବଞ୍ଚିତ ହେବାକୁ ପଡ଼ିଥାନ୍ତା । ତେଣୁ ସ୍ୱଇଚ୍ଛାରେ ମାର୍ଗାରେଟ ଏବଂ ଆଣ୍ଟୋନୀ ପରସ୍ପରଠାରୁ ଦୂରେଇ ଗଲେ ବିନା ଡାଇଭର୍ସରେ ।

ଏଥର ମାର୍ଗାରେଟ ସମ୍ପୂର୍ଣ୍ଣ ସ୍ୱାଧୀନ ହୋଇଗଲେ । ମୁକ୍ତ ଆକାଶର ବିହଙ୍ଗୀଟି ନିଜ ବୟସଠାରୁ ସାନ ଯୁବକମାନଙ୍କ ସହିତ ସେ ସମ୍ପର୍କ ରଖିବା ପାଇଁ ପାଗଳ ହୋଇଉଠିଲେ । ତାଙ୍କ ନିଜ ପୁଅ ବୟସର ଯୁବକମାନଙ୍କ ସହିତ ସେ ନାଚଗୀତରେ ମସଗୁଲ ରହିଲେ । ବୟସର ଅପରାହ୍ନରେ ସେ ପହଞ୍ଚିଛନ୍ତି । ଅଚଳାଚଳ ସମ୍ପତ୍ତିର ସେ ଉତ୍ତରାଧିକାରିଣୀ । ମା' ମେରୀଙ୍କର ସମସ୍ତ ସମ୍ପତ୍ତିର ମାଲିକାଣୀ ସେ । ମାର୍ଗାରେଟ ଏବେ ବହୁ ସମ୍ମାନଜନକ ପଦପଦବୀର ଅଧିକାରିଣୀ । ସମସ୍ତ ସମ୍ମାନ ଏବଂ ପଦମର୍ଯ୍ୟାଦା ସତ୍ତ୍ୱେ ଏହି ପ୍ରିନସେସ୍ ଜଣକ ଏବେ ବି ନୂତନର ସନ୍ଧାନରେ । ସେ ବୟସର ଅପରାହ୍ନରେ ପହଞ୍ଚିଥିଲେ ମଧ୍ୟ ରଙ୍ଗୀନ ପ୍ରଜାପତିମାନଙ୍କୁ ଧରି ରଖିବାର ନିଶା ଛାଡ଼ିପାରି ନାହାନ୍ତି ।



# ପ୍ରେମିକ ପ୍ରବର ପାପାଣ୍ଡ୍ରୁ (ଗ୍ରୀସ୍)

ଆଣ୍ଡ୍ରିଆସ ପାପାଣ୍ଡ୍ରୁ ବିଶ୍ୱ-ଇତିହାସରେ ଏକ ବହୁଚର୍ଚ୍ଚିତ ନାମ। ବୟସର ଉର୍ଦ୍ଧ୍ୱ ଶୀର୍ଷ ପାହାଚରେ ପହଞ୍ଚିଥିଲେ ମଧ୍ୟ ସେ ଚିରସବୁଜ। ସତୁରୀ ବର୍ଷ ବୟସରେ ମଧ୍ୟ ସେ ପ୍ରେମ କରିପାରନ୍ତି। ଏହି ପ୍ରେମିକ କୌଣସି ସାଧାରଣ ବ୍ୟକ୍ତି ନୁହନ୍ତି। ସେ ହେଉଛନ୍ତି ଗ୍ରୀସ୍‌ର ପ୍ରଧାନମନ୍ତ୍ରୀ। ତାଙ୍କ ଅତୀତ ମଧ୍ୟ ପ୍ରେମମୟ। ଅନେକ ନାରୀଙ୍କ ବାହୁବେଷ୍ଟନୀ ମଧ୍ୟରେ ସେ ରାଜନୀତିର ସ୍ୱାଦ ଚାଖିଛନ୍ତି। ଆଣ୍ଡ୍ରିଆସ ପାପାଣ୍ଡ୍ରୁଙ୍କ ପ୍ରେମିକ ଜୀବନ ବିଷୟରେ ଜାଣିବା ପୂର୍ବରୁ ଥରେ ତାଙ୍କର ଇତିହାସ ଉପରେ ଆଖିବୁଲାଇ ଆଣିବା ଉଚିତ ହେବ।

> **ବିଶ୍ୱ ଇତିହାସରେ ଏମିତି ଜଣେ ଜଣେ ଜନନାୟକ ନାମ ଶୁଣାଯାଏ ଯେଉଁମାନଙ୍କ ଜୀବନ ଯେତିକି ରାଜନୈତିକ ଘନଘଟାରେ ଅସ୍ଥିର, ପ୍ରେମ ପ୍ରଣୟ ପ୍ରତାରଣାରେ ମଧ୍ୟ ସେତିକି ଉର୍ଦ୍ଧ୍ୱମୁଖ। କେବଳ ରାଜନୀତିରେ ନୁହେଁ, ରୋମାନ୍‌ସରେ ମଧ୍ୟ ସେ ସ୍ଥାନ-କାଳ-ପାତ୍ର ସବୁର ଉର୍ଦ୍ଧ୍ୱରେ। ଆମ କାହାଣୀର ନାୟକ ହେଉଛନ୍ତି ବର୍ଷୀୟାନ ରାଜନୈତିକ ନେତା ଗ୍ରୀସ୍‌ର ତତ୍କାଳୀନ ପ୍ରଧାନମନ୍ତ୍ରୀ ପାପାଣ୍ଡ୍ରୁ।**

୧୯୧୯ ମସିହାରେ ଗ୍ରୀସ୍ ଦେଶରେ ଆଣ୍ଡ୍ରିଆସ ପାପାଣ୍ଡ୍ରୁଙ୍କର ଜନ୍ମ। ଛାତ୍ରଜୀବନରୁ ହିଁ ପାପାଣ୍ଡ୍ରୁ ଗ୍ରୀସ୍‌ବାସୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ। ୧୯୩୯ ମସିହାରେ ସେ ବାମପନ୍ଥୀ ଆନ୍ଦୋଳନରେ ଯୋଗଦେଇଥିଲେ। ଏଥିପାଇଁ ଦେଶର ତତ୍କାଳୀନ ଦକ୍ଷିଣପନ୍ଥୀ ସରକାର (ଜେନେରାଲ ଜନ୍ ମେଟାକ୍ସାସ୍)ଙ୍କ ଠାରୁ ତାଙ୍କୁ ବହୁ ନିର୍ଯ୍ୟାତନା ଭୋଗିବାକୁ ପଡ଼ିଥିଲା। ବାରମ୍ବାର ସେ ଗିରଫ ହୋଇଥିଲେ। ୧୯୪୦ ମସିହାରେ ୨୧ ବର୍ଷ ବୟସରେ ସେ ଗ୍ରୀସ୍ ଛାଡ଼ି ନିୟୁୟର୍କ ପଳାଇ ଯାଇଥିଲେ। ସେତେବେଳେ ତାଙ୍କ ପାଖରେ ମାତ୍ର ୧୪ ଡଲାର ଥିଲା। ବଞ୍ଚିବା ପାଇଁ ତାଙ୍କୁ ସେଠାରେ ବଡ଼ଧରଣର ସଙ୍ଘର୍ଷ କରିବାକୁ ପଡ଼ିଥିଲା। ସେ ହୋଟେଲର ଝରକା କବାଟ ସଫା କରିବାଠାରୁ ଲାଇବ୍ରେରୀରେ କାର୍ଯ୍ୟ କରିବା ପର୍ଯ୍ୟନ୍ତ ସବୁପ୍ରକାର କାର୍ଯ୍ୟ କରିଥିଲେ। କଲମ୍ବିଆ ଏବଂ ହାରବାଡ଼ ବିଶ୍ୱବିଦ୍ୟାଳୟରୁ ସେ

ଉଚ୍ଚଶିକ୍ଷା ଲାଭ କରିଥିଲେ। ପରେ ପରେ ସେ ଆମେରିକାର ନାଗରିକତ୍ୱ ଗ୍ରହଣ କରିଥିଲେ। ସେ କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟରେ ଅର୍ଥନୀତିର ମୁଖ୍ୟ ପ୍ରଫେସର ପଦବୀରେ ଅଧିଷ୍ଠିତ ହୋଇଥିଲେ।

ପାପାଣ୍ଡୃଙ୍କର ପ୍ରଥମ ପ୍ରେମ ଆରମ୍ଭ ହୁଏ କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟରୁ। ଏଠାରେ ସେ ଆମେରିକାର ମାର୍ଗରେଟ ଚାଣ୍ଟଙ୍କ ପ୍ରେମରେ ପଡ଼ିଥିଲେ। ଉଭୟ ବିବାହ ବନ୍ଧନରେ ଆବଦ୍ଧ ହୋଇଥିଲେ। ୧୯୫୦ ବେଳକୁ ଗ୍ରୀକ୍ ରାଜନୀତିର ପଟ୍ଟପରିବର୍ତ୍ତନ ହୋଇ ସାରିଥିଲା। ସେଠାରେ ପାପାଣ୍ଡୃଙ୍କ ପିତା ଜର୍ଜ ପାପାଣ୍ଡୃ ଦକ୍ଷିଣପନ୍ଥୀମାନଙ୍କୁ ପରାଜିତ କରି ଗ୍ରୀକ୍‌ର ପ୍ରଧାନମନ୍ତ୍ରୀ ହେଲେ। ୧୯୫୯ ମସିହାରେ ଗ୍ରୀସ୍ ପରିଭ୍ରମଣରେ ଆସିଥିବା ବେଳେ ପାପାଣ୍ଡୃଙ୍କୁ ତାଙ୍କ ପିତା ଜର୍ଜ ସେଠାରେ ରହିବା ପାଇଁ ପରାମର୍ଶ ଦେଇଥିଲେ। ପାପାଣ୍ଡୃ ସମ୍ମତି ଜଣାଇଥିଲେ। ସେ ଆମେରିକାର ନାଗରିକତ୍ୱ ପରିତ୍ୟାଗ କରି ଗ୍ରୀସ୍ ନାଗରିକତ୍ୱ ଗ୍ରହଣ କଲେ। ୧୯୬୪ରେ ପାପାଣ୍ଡୃ ଗ୍ରୀସ୍ ପାର୍ଲାମେଣ୍ଟ ନିର୍ବାଚନରେ ବିଜୟୀ ହୋଇଥିଲେ। ଏଇଠୁ ତାଙ୍କର ରାଜନୈତିକ ଜୀବନ ଆରମ୍ଭ ହୋଇଥିଲା।

ରାଜନୀତିର ଶୀର୍ଷ ସ୍ଥାନରେ ପହଞ୍ଚି ସାରିଥିଲେ ପାପାଣ୍ଡୃ ନିଜର ପ୍ରତିଭା ଏବଂ କାର୍ଯ୍ୟଦକ୍ଷତା ବଳରେ। ରାଜନୀତି ତାଙ୍କୁ ଉଭୟ ପ୍ରଶଂସା ଏବଂ ଲାଞ୍ଛନା ଆଣିଦେଇଛି। ୧୯୬୦ ବେଳକୁ ସେ ଏକପ୍ରକାର ରାଜନୈତିକ ଘନଘଟା ଭିତର ଦେଇ ଗତିକରୁଥିବା ବେଳେ, ହଠାତ୍ ତାଙ୍କର ଜୀବନ ଆକାଶରେ ଦେଖା ଦିଅନ୍ତି ଜନୈକା ସୁଇଡିଶ୍ ସୁନ୍ଦରୀ ରାଜନିଆ ନିକବ୍ଲମ୍। ଷ୍ଟକ୍‌ହେମ୍‌ଠାରେ ତାଙ୍କର ଯତ୍ନ ନେବାପାଇଁ ଥିବା ଏହି ସୁନ୍ଦରୀ ଜଣକ ଶେଷରେ ତାଙ୍କର ଅଙ୍କଶାୟିନୀ ହୁଅନ୍ତି। ପାପାଣ୍ଡୃ ପୁଣି ଥରେ ଚର୍ଚ୍ଚାର ବିଷୟବସ୍ତୁ ହୋଇ ପଡ଼ନ୍ତି। ନିକବ୍ଲମ୍‌ଙ୍କଠାରୁ ୧୯୭୦ରେ ପାପାଣ୍ଡୃଙ୍କର ଏକ କନ୍ୟାସନ୍ତାନ ଜାତହୁଏ। ତାଙ୍କ ନାମ ଆମିଲିଆ ଆଣ୍ଡ୍ରିଭ। ଘଟଣାଟିରେ ମାର୍ଗାରେଟ ଖୁବ୍ ବ୍ୟଥିତ ହୋଇପଡ଼ନ୍ତି। ହଠାତ୍ ଦିନେ ପାପାଣ୍ଡୃ - ନିକବ୍ଲମ୍‌ଙ୍କ ବିବାହ ଘୋଷିତ ହୁଏ। ପ୍ରତିଶୋଧ ନେବା ପାଇଁ ଦୃଢ଼ ପ୍ରତିଜ୍ଞାକରି ବସନ୍ତି ମାର୍ଗାରେଟ।

ଏତିକିରେ ପାପାଣ୍ଡୃଙ୍କର ପ୍ରେମ ନିଶା ଶେଷ ହୁଏନାହିଁ। ୭୦ ବର୍ଷ ବୟସରେ ତାଙ୍କ ଜୀବନରେ ପୁଣି ଜଣେ ତରୁଣୀ ଦେଖା ଦିଅନ୍ତି। ସେ ହେଲେ

ଦିମିତ୍ରା ଲିଆନି । ପାପାଣ୍ଡ୍ରୁଙ୍କ ସହିତ ସମ୍ପର୍କ ଗଢ଼ିଉଠିବା ପୂର୍ବରୁ ଦିମିତ୍ରା ଆଉ କେତେଥର ବିବାହ କରିସାରିଥିଲେ । ୧୯ ବର୍ଷରେ ସେ ପ୍ରଥମ ଥର ପାଇଁ ବିବାହ କରିଥିଲେ । ମାତ୍ର ଦୁଇବର୍ଷ ପରେ ତାଙ୍କର ବିବାହ ବିଚ୍ଛେଦ ଘଟିଥିଲା । ୧୯୮୨ ଶେଷ ଆଡ଼କୁ ସେ ଆଲେକ୍‌ଜାଣ୍ଡାର କାପୋପୁଲସ୍‌ଙ୍କୁ ବିବାହ କଲେ । ୧୯୮୮ ଆଡ଼କୁ ଏହି ବିବାହ ବିଚ୍ଛେଦରେ ପରିଣତ ହୋଇଥିଲା । ଏଥିପାଇଁ ଦାୟୀ ଥିଲେ ଆଣ୍ଡ୍ରିଆସ୍ ପାପାଣ୍ଡ୍ରୁ । ଦିମିତ୍ରା ଗ୍ରୀକ୍ ପ୍ରଧାନମନ୍ତ୍ରୀ ପାପାଣ୍ଡ୍ରୁଙ୍କ ସହିତ ଅତି ଘନିଷ୍ଠ ଥିବାରୁ ବାଧ୍ୟ ହୋଇ ଆଲେକ୍‌ଜାଣ୍ଡାର ତାଙ୍କୁ ଛାଡ଼ପତ୍ର ଦେଇଥିଲେ ।

ପାପାଣ୍ଡ୍ରୁଙ୍କୁ ବିବାହ କରିବା ପୂର୍ବରୁ ଦିମିତ୍ରା ଅଲିମ୍ପିକ୍ ଏୟାରଲାଇନ୍‌ସର ଜଣେ ଏୟାର ହଷ୍ଟେସ୍ ଥିଲେ । ସେ ଯେତେବେଳେ ପ୍ରଧାନମନ୍ତ୍ରୀଙ୍କ ଫ୍ଲାଇଙ୍ଗ୍ ଷ୍ଟାଫ୍ ଭାବେ ନିଯୁକ୍ତି ପାଇଲେ, ତାଙ୍କ ଆନନ୍ଦ କହିଲେ ନସରେ । ଏଥିରେ ଅବଶ୍ୟ ଦିମିତ୍ରାଙ୍କ ବନ୍ଧୁ ରୁଲା ଭ୍ଲାଚୋପୁଲୁଙ୍କ ହାତ ଥିଲା । ମନପ୍ରାଣ ଦେଇ ଦିମିତ୍ରା, ପାପାଣ୍ଡ୍ରୁଙ୍କ ସେବା କରିଥିଲେ । ପ୍ରଧାନମନ୍ତ୍ରୀ ପାପାଣ୍ଡ୍ରୁଙ୍କ ଦିମିତ୍ରାଙ୍କର ସହିତ ସମ୍ପର୍କ ଦିନକୁଦିନ ଘନିଷ୍ଠ ହେବାକୁ ଲାଗିଲା । ପାପାଣ୍ଡ୍ରୁ ଏହି ସୁଇଡିସ୍ ସୁନ୍ଦରୀଙ୍କୁ ନେଇ ବିଭିନ୍ନ ହୋଟେଲରେ ରାତ୍ରୀଯାପନ କରିବାକୁ ଲାଗିଲେ । ଏ ଘଟଣା ଆଉ ଲୁଚିଛପି ରହିଲା ନାହିଁ । ଗ୍ରୀକ୍‌ର ସମ୍ବାଦପତ୍ର, ମାଗାଜିନ ଗୁଡ଼ିକ ଉଭୟଙ୍କ ସମ୍ପର୍କକୁ ଅଧିକ ରସାଳ କରି ଛାପିବାରେ ଲାଗିଲେ ।

ପ୍ରେମର ପାରାବାରରେ ଭାସୁଥିବା ବେଳେ ହଠାତ୍ ପାପାଣ୍ଡ୍ରୁ ଛାତିରେ ଯନ୍ତ୍ରଣା ଅନୁଭବ କଲେ । ତାଙ୍କୁ ଡାକ୍ତରମାନେ ବିଶ୍ରାମ ନେବାପାଇଁ ପରାମର୍ଶ ଦେଲେ । କିନ୍ତୁ ଦେଖାଗଲା ପାପାଣ୍ଡ୍ରୁ, ଦିମିତ୍ରାକୁ ଛାଡ଼ି ରହିପାରିବେ ନାହିଁ । ସ୍ୱାସ୍ଥ୍ୟ ଅଧିକ ଖରାପ ହେବାରୁ ତାଙ୍କୁ ଲଣ୍ଡନ ହସପିଟାଲରେ ଭର୍ତ୍ତି କରାଗଲା । ସାତଘଣ୍ଟା ଧରି ତାଙ୍କର ଛାତି ଅପରେସନ କରାଯାଇଥିଲା । ଏହା ଥିଲା ୧୯୮୮ ଅଗଷ୍ଟ ୨୫ ତାରିଖର ଘଟଣା । ଅପରେସନ ପରେ ତାଙ୍କୁ ସର୍ବପ୍ରଥମେ ଅଭିବାଦନ ଜଣାଇଥିଲେ ଦିମିତ୍ରା । ଲଣ୍ଡନ ହସପିଟାଲରେ ପାପାଣ୍ଡ୍ରୁଙ୍କୁ ଦୁଇମାସ ରହିବାକୁ ପଡ଼ିଲା, ଏଇ ଦୁଇମାସ କାଳ ଦିମିତ୍ରା ତାଙ୍କର ସମସ୍ତ ସେବା କରିଥିଲେ । ୩୬ତମ ବିବାହ ବାର୍ଷିକୀରେ ପାପାଣ୍ଡ୍ରୁ, ମାର୍ଗାରେଟଙ୍କୁ ଡାଇଭର୍ସ କରି ସର୍ବସାଧାରଣରେ ଦିମିତ୍ରାଙ୍କୁ ପତ୍ନୀଭାବେ ଗ୍ରହଣ କଲେ । ମାର୍ଗାରେଟ ମଧ୍ୟ ଏକ

ନୂତନ ଦଳ ଗଢ଼ି ବସିଲେ ପାପାଣ୍ଡୃଙ୍କ ଉପରେ ପ୍ରତିଶୋଧ ନେବା ଆଶାରେ । ଖାଲି ସେତିକି ନୁହେଁ ମାର୍ଗାରେଟଙ୍କର ଚାରି ସନ୍ତାନ ମଧ୍ୟ ପାପାଣ୍ଡୃଙ୍କଠାରୁ ଏକପ୍ରକାର ଅଲଗା ହୋଇଗଲେ । ତାଙ୍କ ପୁଅ ଜର୍ଜ ପାପାଣ୍ଡୃ ଯିଏ କି ମନ୍ତ୍ରିମଣ୍ଡଳରେ ଶିକ୍ଷାମନ୍ତ୍ରୀ ଥିଲେ, ନିଜ ମା'ଙ୍କ ପକ୍ଷ ସମର୍ଥନ କରି ସେ ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଲେ ।

ଏସବୁ ସତ୍ତ୍ୱେ ପାପାଣ୍ଡୃ ଦବିଯାଇ ନଥିଲେ । ସେ ଦିମିତ୍ରାଙ୍କ ସହ ନୂଆ ଜୀବନକୁ ଉପଭୋଗ କରି ଚାଲିଥିଲେ । ଗ୍ରୀକ୍‌ବାସୀ ମଧ୍ୟ ତାଙ୍କର ଯୁଗ୍ମ ଜୀବନକୁ ଗ୍ରହଣ କରିନେଇଥିଲେ । ଏହି ବର୍ଷୀୟାନ ପ୍ରଧାନମନ୍ତ୍ରୀଙ୍କ ରୋମାଣ୍ଟିକ ଜୀବନ ବିଶ୍ୱ-ଇତିହାସର ଏକ ଅବିସ୍ମରଣୀୟ ଘଟଣା ହୋଇ ରହିଗଲା ।



# ଚର୍ଚ୍ଚାର ଚୌହଦିରେ ପାମେଲା

ଅନେକ ଦିନ ପରେ ସିଏ ଆସିଥିଲା। ପ୍ରାୟ ପାଞ୍ଚବର୍ଷ ପରେ। ବମ୍ବେ ମହାନଗରୀରେ ସେ ପାଦ ନଦେଉଣୁ, ତା' ନାମରେ ସେଇ ପୁରୁଣା ଗୁଜବର ପ୍ରଚାର ଆରମ୍ଭ ହୋଇଯାଇଥିଲା। କିଏ କହିଲା ମେହରଲିରେ ତା' ନାମରେ ଗୋଟାଏ ବଡ଼ ଫାର୍ମ ଅଛି। ପୁଣି କିଏ କହିଲା ଚନ୍ଦ୍ରଶେଖରଙ୍କ ସହିତ ଏବଂ ଚନ୍ଦ୍ରସ୍ୱାମୀଙ୍କ ସହିତ ତା'ର କୁଆଡ଼େ ଗୁପ୍ତ ସମ୍ପର୍କ ରହିଛି। ଏମିତି ଅନେକ ଅଜବ ଗୁଜବ ରଟିଯାଇଥିଲା ସାରା ମହାନଗରୀଟାଯାକ।

କିଏ ଏହି ମହିଳା ? ପାମେଲା। ହରିଆନାର ଏକ ମଧ୍ୟବିତ୍ତ ଜାଠ ପରିବାରରେ ତା'ର ଜନ୍ମ। ପିତା ମେଜର ମହେନ୍ଦ୍ର ସିଂ ଚୌଧୁରୀ ଜଣେ ସାମରିକ ଅଫିସର ଥିଲେ। ଭାରତ-ଚୀନ ଯୁଦ୍ଧରେ ସେ ପ୍ରାଣତ୍ୟାଗ କରିଥିଲେ। ତା' ପରଠୁଁ ପାମେଲାର ପାଳନ ଭାର ପଡ଼ିଥିଲା ମାତା ଶକୁନ୍ତଳା ଚୌଧୁରୀଙ୍କ ଉପରେ। କିନ୍ତୁ ପାମେଲାର ଖାମଖିଆଲୀ ସ୍ୱଭାବ ପାଇଁ ଶକୁନ୍ତଳା ତାକୁ ୧୯୮୨ରେ ତେଜ୍ୟକନ୍ୟା କରିଥିଲେ। ତେଣୁ ମାତା ଏବଂ କନ୍ୟାଙ୍କ ସମ୍ପର୍କ ଏକପ୍ରକାର ତିକ୍ତ ହୋଇଉଠିଥିଲା। ପାମେଲା ଚାହିଁଥିଲା ଅବାଧ ସ୍ୱାଧୀନତା। କିନ୍ତୁ ଜଣେ ଡିଫେନ୍‌ସ ଅଫିସରଙ୍କ ପତ୍ନୀଭାବେ ଶକୁନ୍ତଳା ଏଥିପାଇଁ ସମ୍ମତ ନଥିଲେ। ଏଥର ଘୁରିବୁଲିଥିଲା ପାମେଲା ମୁକ୍ତ ବିହଙ୍ଗୀ ଭଳି।

> **ପାମେଲା ସାଧାରଣ ଝିଅଟିଏ ନଥିଲା। ଅନେକ ଆଶାର ମୀନାର ତା' ଭିତରେ ବସା ବାନ୍ଧିଥିଲା। ଉପରକୁ ଉଠିବା ନିଶା ତାକୁ ଅନ୍ଧ କରିଦେଇଥିଲା। ଏଥିପାଇଁ ତାକୁ ଅନେକ କିଛି ତ୍ୟାଗ କରିବାକୁ ପଡ଼ିଥିଲା। ଭାରତ ମାଟିରୁ ଦୂରେଇଗଲା ପରେ ତା' ଆଖିର ରଙ୍ଗ ପ୍ରତି ମୁହୂର୍ତ୍ତରେ ବଦଳି ଯାଉଥିଲା। ଅନେକ ରୋମାଞ୍ଚକର କାହାଣୀ ରୂପ ନେଲା ଏଇ ଭାରତୀୟ ଲଳନା ପାଇଁ। ଏକଦା ଏଇ ତରୁଣୀ ବ୍ରିଟିଶ ପାର୍ଲାମେଣ୍ଟରେ ହଇଚଇ ସୃଷ୍ଟି କରିବାକୁ ସକ୍ଷମ ହୋଇପାରିଥିଲା।**

ଲଣ୍ଡନଠାରେ ପହଞ୍ଚି ପାମେଲା ନିଜପାଇଁ ସବୁଜ ସଙ୍କେତ ସୃଷ୍ଟିରେ ପ୍ରଥମେ ମନ ଦେଇଥିଲେ। ଲଣ୍ଡନର ନାଇଟ୍ କ୍ଲବ୍‌ରେ ତା'ର ବନ୍ଧୁତା ଗଢ଼ି ଉଠିଲା ସଣ୍ଡେ ଟାଇମସ୍ ନିଉଜ୍‌ପେପର୍‌ର ଅବିବାହିତ ଏଡିଟର ଆଣ୍ଡ୍ରିଉନିଲ ସହିତ। ପରେ ପରେ ୧୯୮୮ ଶେଷ ଆଡ଼କୁ ଉଭୟଙ୍କ ସମ୍ପର୍କ ମଧ୍ୟ ତିକ୍ତ ହୋଇ ଉଠିଥିଲା। ଏଥିପାଇଁ ନିଲ୍‌ଙ୍କୁ ଓକିଲଙ୍କ ସାହାଯ୍ୟ ନେବାକୁ ପଡ଼ିଥିଲା। ଏହାପରେ ପାମେଲାର ବନ୍ଧୁତା ଗଢ଼ିଉଠେ 'ଦି ଅବ୍‌ଜରଭର୍'ର ସମ୍ପାଦକ ଡୋନାଲଡ ଟ୍ରେଲଫୋଡ୍‌ଙ୍କ ସହିତ। ବୋଡ୍‌ରୁମ ମାଗାଜିନ୍‌ର ଏଡ଼ିଟର ମାର୍କ ବର୍କାଙ୍କ ସହାୟତାରେ ପାମେଲା ବ୍ରିଟିଶ ପାର୍ଲାମେଣ୍ଟର ମେମ୍ବର ଡେଭିଡଙ୍କ ସହିତ ପରିଚିତ ହୋଇଥିଲେ। ପାର୍ଲାମେଣ୍ଟ ପାସ୍ ପାଇଁ ଡେଭିଡ, ଏଇ ଭାରତୀୟ ଲଳନା ପାଇଁ ଖୁବ୍ ଚେଷ୍ଟା କରିଥିଲେ। ମାତ୍ର କନ୍‌ଜରଭେଟିଭ୍ ପାର୍ଟିର ଏମ୍.ପି. ହେନେରୀ ଏଥିପାଇଁ ଆଦୌ ସମ୍ମତ ହୋଇନଥିଲେ। ବାସ୍ ଆରମ୍ଭ ହୋଇଥିଲା ପାମେଲାକୁ ନେଇ ଝଡ଼ତୋଫାନ। ବ୍ରିଟିଶ ନିଉଜ୍‌ପେପର ଗୁଡ଼ିକ ବେଶ୍ ଚଞ୍ଚଳ ହୋଇ ଉଠିଥିଲେ ପାମେଲାର ସେକ୍ସ ସ୍କାଣ୍ଡାଲ ନେଇ। ପରେ ପରେ ସିକୁରିଟି ପ୍ରଶ୍ନ ଉଠିଥିଲା। କେହିଜଣେ ତା' ପାଖକୁ ରକ୍ଷା କରିବାକୁ ଆଗେଇ ଆସିନଥିଲେ। ଏପରି ତାଙ୍କ ସ୍ୱାମୀ ଡୋମିନିକ୍ ବୋଡ୍ରେସ ମଧ୍ୟ। ଅବଶ୍ୟ ବର୍କା ବହୁ କ୍ଷେତ୍ରରେ ପାମେଲାକୁ ବଞ୍ଚାଇଥିଲେ। ବହୁ ବନ୍ଧୁ ପାମେଲାର ପରିଚିତ ଥିଲେ ମଧ୍ୟ କେହି ଜଣେ ବିପଦ ସମୟରେ ଆସିନଥିଲେ। ଇଭିନିଂ ଷ୍ଟାଣ୍ଡାର୍ଡରେ ପ୍ରକାଶିତ ହେଲା ଯେ ଲିବିୟାର ଗୋଇନ୍ଦା ଅଫିସରମାନଙ୍କ ସହିତ ପାମେଲାର ଭିତିରି ସମ୍ପର୍କ ରହିଛି। ଏକଥା ଶୁଣାଗଲା, କଲୋନେଲ ଅହମଦ ଗେଡ୍ଡା ଗଦାଫିଙ୍କ ସହିତ ସେ ଅନେକ ଥର ପ୍ୟାରିସରେ ତାଙ୍କ ପ୍ରାଇଭେଟ ଜେଟ୍‌ରେ ଯିବା ଆସିବା କରେ। କେତେକ କହିଲେ ପି. ଚୌଧୁରୀ ଏବଂ ପି. ସିଂହ ନାମରେ ଅଲଗା ଅଲଗା ଆକାଉଣ୍ଟରେ ବହୁ ଧନ ଗଚ୍ଛିତ ଅଛି। ଅନେକ ଅସମ୍ଭବ ରକମର ଗୁଜବ୍ ଶୁଣାଗଲା। କିଏ କହିଲା, ପାମେଲାର ଜୀବନ କାହାଣୀ ପ୍ରକାଶ କରିବା ପାଇଁ ଫ୍ଲାଟ ଷ୍ଟ୍ରିଟ୍ ତାକୁ ଦୁଇ କୋଟି ପାଉଣ୍ଡ ଯାଚିଛି। ଏକ ନଗ୍ନ ଫଟୋ ପାଇଁ ପଲ୍‌ରେମଣ୍ଡ ତାଙ୍କୁ ସାଢ଼େ ସାତଲକ୍ଷ ପାଉଣ୍ଡ ଦେଇଥିଲେ ବୋଲି ଶୁଣାଗଲା। ଏଡ଼ିଟର ନେଭିଲ ପ୍ଲେଆରଙ୍କ ମତରେ, ତାଙ୍କର ସୁନ୍ଦର ମୁହଁଟିକୁ ଦେଖିବା ପାଇଁ ଯେମିତି କାତି ଅପେକ୍ଷା କରି ରହିଥିଲା। ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସହିତ ପାମେଲାର ଯୌନ ସମ୍ପର୍କ ଥିବା

କଥା ଅନେକ ଚର୍ଚ୍ଚାର ବିଷୟ ହୋଇପଡ଼ିଥିଲେ ମଧ୍ୟ ଏହାର କୌଣସି ପ୍ରମାଣ ମିଳିନଥିଲା ।

ବ୍ରିଟିଶ ହାଉସ ଅଫ୍ କମନ୍‌ସର ଜଣେ ରିସର୍ଚ୍ଚ କ୍ଲର୍କ ଥିଲେ ପାମେଲା । ବାର୍ଷିକ ତିନିହଜାର ପାଉଣ୍ଡ ଦରମା ଥିଲା । କିନ୍ତୁ ତାଙ୍କର ବ୍ୟୟବହୁଳ ଚଳଣୀ ଆଦୌ ସନ୍ଦେହମୁକ୍ତ ନଥିଲା । ବ୍ରିଟିଶ ସମ୍ବାଦପତ୍ର ଗୁଡ଼ିକ ଅଧିକ ବଦନାମ କରାଇଥିଲେ ପାମେଲାଙ୍କୁ । ନିଜ ସପକ୍ଷରେ ପ୍ରମାଣ ସଂଗ୍ରହ କରିବା ଭୀଷଣ କଷ୍ଟକର ଥିଲା । କାରଣ ଅଭିଯୋଗ ଗୁଡ଼ିକ ବର୍ଣ୍ଣବିଦ୍ୱେଷକୁ କେନ୍ଦ୍ର କରି ଗଢ଼ି ଉଠିଥିଲା । ଯେଉଁମାନେ ଏକଦା ପାମେଲାର ନିକଟତମ ବନ୍ଧୁ ଥିଲେ, ସେମାନେ ସମସ୍ତେ ଆତ୍ମଗୋପନ କରିଥିଲେ ।

କିଛିଦିନ ତଳେ ପାମେଲା 'ଦି ମୋଲ ଅନ ସନ୍‌ଡେ' ପାଇଁ କେତେକ ଫଟୋ ଚିତ୍ର ପାଇଁ ବମ୍ବେ ଆସିଥିଲେ । ଟୁରିଷ୍ଟ ଟ୍ୟାକିସରେ ସେ ସ୍ଥାନକୁ ସ୍ଥାନ ବୁଲି ଷ୍ଟାରମାନଙ୍କୁ ସେମାନଙ୍କ ଘରେ ଭେଟିଥିଲେ । ଦମ୍ଭର ସହିତ ସେ ଘୋଷଣା କରିଥିଲେ, ସେ ପବିତ୍ର । ପୁଣିଥରେ ସେ ଦଲାଲମାନଙ୍କର ଶୀକାର ହେବେ ନାହିଁ ବୋଲି ଆଶ୍ୱାସନାବାଣୀ ଶୁଣାଇଥିଲେ ନିଜକୁ । ଭବିଷ୍ୟତ ହିଁ କହିବ, ଏଇ ଭାରତୀୟ ଲଳନାର ଭାଗ୍ୟରେଖା କେଉଁ ଆଡ଼କୁ ଗତି କରିବ ।



# କାମନାର କାମଧେନୁ ଟେଲର (ହଲିଉଡ୍)

ଏଲିଜାବେଥ ଟେଲରଙ୍କ ଡାକ ନାମ ଥିଲା ଲିଜ୍। ମାତ୍ର ୧୩ ବର୍ଷ ବୟସରେ ଲକ୍ସ ସାବୁନର ବିଜ୍ଞାପନ ମାଧ୍ୟମରେ ସେ ବିଶ୍ୱର ଦୃଷ୍ଟି ଆକର୍ଷଣ କରିଥିଲେ। ବିଶ୍ୱବାସୀ ଏଇ ଚପଳଛନ୍ଦା ରୂପସୀ ତରୁଣୀର ସୌନ୍ଦର୍ଯ୍ୟରେ ମୁଗ୍ଧ ଏବଂ ଚକିତ ହୋଇଥିଲେ। ସୃଷ୍ଟିରେ ଏପରି ରୂପସୀ କ'ଣ ସମ୍ଭବ ? ତାଙ୍କୁ ଯେତେବେଳେ ୧୫ ବର୍ଷ, ହଲିଉଡ଼ର ବିଶିଷ୍ଟ ପତ୍ରକାରମାନଙ୍କ ଲେଖନୀରେ ସ୍ଥାନ ପାଇ ସାରିଥିଲା। ୧୮ ବର୍ଷ ବେଳୁ ତାଙ୍କ ଜୀବନରେ ଦେଖା ଦେଇଥିଲେ ଅନେକ ପୁରୁଷ ବନ୍ଧୁ। ପ୍ରେମ ଏବଂ ପୁରୁଷର ସାନ୍ନିଧ୍ୟ ପାଇଁ ସେ ପାଗଳ ହୋଇ ଉଠୁଥିଲେ। କିନ୍ତୁ କେବେ ପୁରୁଷର ମାୟାଜାଲରେ ଧରାଦେଇ ନଥିଲେ। ବରଂ ଗୋଟିଏ ପରେ ଗୋଟିଏ ସେ ପୁରୁଷ ବନ୍ଧୁମାନଙ୍କୁ ଉପଭୋଗ ପରେ ଫିଙ୍ଗି ଦେଉଥିଲେ। ସେ ଆଗକୁ ଆଗକୁ ମାଡ଼ି ଚାଲିଥିଲେ। ଆଉ କେବେ ପଛକୁ ଫେରି ଚାହିଁନାହାନ୍ତି। ନିଜ ଖୁସି ପାଇଁ ସେ ପୁରୁଷଟିଏ ଗ୍ରହଣ କରୁଥିଲେ ଏବଂ ଇଚ୍ଛା ଅନୁଯାୟୀ ତାକୁ ବ୍ୟବହାର କରୁଥିଲେ। ପ୍ରତିବାଦର ଆଭାସ

**ପ୍ରେମ ଆଉ ପତିକୁ ନେଇ ଖେଳିବା ଥିଲା ତାଙ୍କର ଯେମିତି ଏକ ସଉକ। ଜୀବନର ଷଷ୍ଠ ଦଶକରେ ପାଦଦେଇ ମଧ୍ୟ ତାଙ୍କର ଯୌବନ ଅକ୍ଷୁର୍ଣ୍ଣ ଥିଲା। ଆଖିରେ ଥିଲା ମାଦକତା ସ୍ୱାମୀଟିଏ ଗ୍ରହଣ କରିବା ଏବଂ ଦରକାର ବେଳେ ତାକୁ ପରିତ୍ୟାଗ କରିବା (ଠିକ୍ ଡଷ୍ଟବିନ୍‌କୁ ଫିଙ୍ଗିଦେବା ଭଳି) ଥିଲା ତାଙ୍କର ଏକ ବିଚିତ୍ର ସଉକ। ଚର୍ଚ୍ଚାରେ ସେ ଥିଲେ ମେରିଲିନ୍ ମୋନରୋ, ସୋଫିଆ ଇରେନ୍, ଆଭା ଗାର୍ଡନରଙ୍କଠାରୁ ଯଥେଷ୍ଟ ଉପରେ। ରୂପ ଆଉ ସମ୍ପଦରେ ତାଙ୍କର ସମକକ୍ଷ ଥିଲେ ବିଶ୍ୱର ତିନିଜଣ ମହିଳା - ଫାରାଦିବା, ଇମେଲଡ଼ା ମାର୍କସ ଏବଂ ଜାକେଲିନ କେନେଡ଼ି। ୫୯ ବର୍ଷ ବୟସରେ ଏଇ ମହିଳା ଜଣକ ଅଷ୍ଟମ ପତି ଗ୍ରହଣ କରିଥିଲେ। ଯିଏକି ତାଙ୍କଠାରୁ ୨୦ ବର୍ଷ ସାନ। ବିଶ୍ୱର ସର୍ବତ୍ର ଚର୍ଚ୍ଚିତ ଏଇ ମହିଳା ଜଣକ ହେଉଛନ୍ତି ଏଲିଜାବେଥ୍ ଟେଲର। ହଲିଉଡ୍‌ର ନାମକରା ନମ୍ବରୱାନ୍ ଅଭିନେତ୍ରୀ।**

ପାଇଲେ ସେ ତାକୁ ପରିତ୍ୟାଗ କରି ଦ୍ୱିତୀୟ ପୁରୁଷର ସନ୍ଧାନରେ ବାହାରି ପଡୁଥିଲେ।

୧୮ ବର୍ଷ ବୟସରେ ଲିଜ୍ ବିବାହ କରିଥିଲେ ନିକି ହିଲଟନ୍‌ଙ୍କୁ। ନିକି ଥିଲେ ହିଲଟନ୍ ହୋଟେଲର ଉତ୍ତରାଧିକାରୀ। ଏଇ ସ୍ୱପ୍ନର ରାଜକୁମାର ଜଣଙ୍କ ଲିଜ୍‌ଙ୍କୁ ବାନ୍ଧିରଖି ପାରି ନଥିଲେ। ବିବାହର ଅଳ୍ପଦିନ ପରେ ଲିଜ୍ ଏବଂ ନିକିଙ୍କ ମଧ୍ୟରେ ବିଚ୍ଛେଦ ଘଟିଥିଲା। ଠିକ୍ ପରେ ପରେ ସେ ମାଇକେଲ ୱାଇଡିଙ୍ଗଙ୍କୁ ବିବାହ କଲେ। ମାଇକେଲ ମଧ୍ୟ ଲିଜ୍‌ଙ୍କର ବଶମ୍ୱଦ ହୋଇପାରିଲେ ନାହିଁ। ତେଣୁ ସେ ମାଇକେଲଙ୍କୁ ଡାଇଭର୍ସ କରି ଆଉଜଣେ ସ୍ୱନାମଧନ୍ୟ ଚଳଚ୍ଚିତ୍ର ଅଭିନେତା ମାଇକ୍ ଟଡ୍‌ଙ୍କ ପାଶରେ ଆବଦ୍ଧ ହେଲେ। ମାଇକେଲଙ୍କ ଦୁର୍ଗୁଣ ହେଲା; ସେ ଲିଜଙ୍କ ଆକ୍ଟିଙ୍ଗକୁ ପସନ୍ଦ କରିପାରୁ ନଥିଲେ।

୧୯୫୭ ଫେବୃୟାରୀ ୨ ତାରିଖ ଦିନ ମେକ୍ସିକୋର ଆକାପୁଲକୋ ଠାରେ ଲିଜ୍ ବିବାହ କଲେ ମାଇକ୍ ଟଡ୍‌ଙ୍କୁ। ମାଇକ୍‌ଙ୍କ ଦ୍ୱାରା କନ୍ୟା ସନ୍ତାନଟିଏ ଜନ୍ମ ହୋଇଥିଲା। ତାହାର ନାମ ଥିଲା ଲିଜା ବା ଏଲିଜାବେଥ ଫ୍ରାନ୍‌ସିସ୍। ମାଇକ୍ ସହ ତାଙ୍କର ଯୁଗ୍ମ ଜୀବନ ବେଶୀଦିନ ଅଗ୍ରସର ହୋଇପାରି ନଥିଲା। ମାତ୍ର ୧୪ ମାସ ପରେ ବିମାନ ଦୁର୍ଘଟଣାରେ ମାଇକ୍ ଟଡ୍ ମୃତ୍ୟୁବରଣ କରିଥିଲେ। ଖୁବ୍ ଭାଙ୍ଗିପଡ଼ିଲେ ଲିଜ୍।

ଏଲିଜାବେଥ ଟେଲରଙ୍କୁ ସାନ୍ତ୍ୱନା ଦେବାକୁ ଆଗେଇ ଆସିଲେ ଟଡ୍‌ଙ୍କ ବନ୍ଧୁ ଏଡି ଫିସର। ଫିସର ଭଲଭାବେ ଜାଣିଥିଲେ ଯେ ସେ ମାଇକ୍ ଟଡ୍‌ଙ୍କ ଶୂନ୍ୟସ୍ଥାନ ପୂରଣ କରିପାରିବେ ନାହିଁ। ତେଣୁ ସେମାନଙ୍କ ବିବାହ ଖୁବ୍ କମ୍ ସମୟ ପାଇଁ ସ୍ଥାୟୀ ହୋଇଥିଲା। ମାଇକ୍‌ଙ୍କ ମୃତ୍ୟୁର ଠିକ୍ ୧୪ ମାସ ପରେ ଲିଜ୍‌ଙ୍କ ଜୀବନରେ ଦେଖାଦେଲେ ଆଉଜଣେ ନାୟକ ରିଚାର୍ଡ ବର୍ଟନ। ହଲିଉଡ୍‌ର ଏହି ପ୍ରଖ୍ୟାତ ଅଭିନେତା ଜଣକ ଥିଲେ ଲିଜ୍‌ଙ୍କର ପଞ୍ଚମ ସ୍ୱାମୀ। ତେବେ ଆଶ୍ଚର୍ଯ୍ୟର ବିଷୟ ହେଉଛି, ଲିଜ୍‌ଙ୍କର ଯେତୋଟି ବିବାହ ଏପରିକି ସବୁ ସୁଖଦୁଃଖରେ ତାଙ୍କୁ ସାନ୍ତ୍ୱନା ଦେଇଆସିଛନ୍ତି ତାଙ୍କର ଦ୍ୱିତୀୟ ସ୍ୱାମୀ ମାଇକେଲ ୱାଇଡିଙ୍ଗ। ବର୍ଟନଙ୍କ ସହ ଏଲିଜାବେଥ ବହୁ ସଫଳ ଫିଲ୍ମରେ ଅଭିନୟ କରି ଉଭୟ ନାମ ଏବଂ ଅର୍ଥ ଉପାର୍ଜନ କରିଥିଲେ। ସେମାନଙ୍କ ଯୁଗ୍ମଜୀବନ ୯ ବର୍ଷ

ପର୍ଯ୍ୟନ୍ତ (୧୯୬୪ ରୁ ୧୯୭୩) ସ୍ଥାୟୀ ହୋଇଥିଲା । ଅତି ସାମାନ୍ୟ କାରଣରୁ ଉଭୟଙ୍କ ମଧ୍ୟରେ ମାନସିକ ଯନ୍ତ୍ରଣା ବୃଦ୍ଧିପାଇ ଶେଷରେ ସେମାନେ ପରସ୍ପରକୁ ଡାଇଭର୍ସ କରିବାକୁ ବାଧ୍ୟ ହୋଇଥିଲେ ।

ଲିଜ୍‌ଙ୍କ ଜୀବନ ଆକାଶରେ ଏଥର ଦେଖାଦେଲେ ଜଣେ ଡଚ୍ ଯୁବକ ହେନେରୀ ଉଇନବର୍ଗ । ମାତ୍ର ସେମାନଙ୍କ ଜୀବନ ବେଶୀଦିନ ଆଗେଇ ପାରି ନଥିଲା । ଏକ ମାରାତ୍ମକ ଅପରେସନ ପାଇଁ ଲିଜ୍‌କୁ ଲସ୍‌ଏଞ୍ଜେଲ୍‌ସ ଯିବାକୁ ପଡ଼ିଲା । ତାଙ୍କୁ ଏଠାରେ ସମସ୍ତ ପ୍ରକାର ସାନ୍ତ୍ୱନା ଦେଇଥିଲେ ବର୍ଟନ । ୧୯୭୫ ଅଗଷ୍ଟ ମାସରେ ପୁଣିଥରେ ରିଚାର୍ଡ ବର୍ଟନ ଏବଂ ଲିଜ୍ ବିବାହ କଲେ । ଏକ ଆଫ୍ରିକୀୟ ଚର୍ଚ୍ଚରେ ଏ ବିବାହ ଗୋଟିଏ ବର୍ଷ ପର୍ଯ୍ୟନ୍ତ ସ୍ଥାୟୀ ହୋଇଥିଲା । ପୁଣିଥରେ ସେମାନେ ପରସ୍ପରକୁ ଡାଇଭର୍ସ କଲେ ।

ଏଥର ଲିଜ୍‌ଙ୍କ ମନଆକାଶରେ ଦେଖାଦେଲେ ଆଉଜଣେ ପୁରୁଷ, ଜନ୍ ୱାଣର୍ । ବର୍ଟନ ମଧ୍ୟ ବିବାହ କଲେ ସୁସାନ ହଣ୍ଟଙ୍କୁ । ୧୯୭୮ରୁ ୧୯୮୨ ପର୍ଯ୍ୟନ୍ତ ଅର୍ଥାତ୍ ଚାରିବର୍ଷ ପର୍ଯ୍ୟନ୍ତ ଲିଜ୍ ଏବଂ ୱାଣରଙ୍କ ବିବାହ ସ୍ଥାୟୀ ହୋଇଥିଲା । ଲିଜ୍ ତାଙ୍କର ୫୦ତମ ଜୟନ୍ତୀ ଲଣ୍ଡନଠାରେ ପାଳନ କଲେ । ଏତେବେଳକୁ ବର୍ଟନ ଏବଂ ହଣ୍ଟଙ୍କ ମଧ୍ୟରେ ଫାଟ ସୃଷ୍ଟି ହୋଇ ଯାଇଥାଏ । ଲଣ୍ଡନଠାରେ ଲିଜ୍‌ଙ୍କୁ ପୁଣି ଭେଟିଲେ ବର୍ଟନ ଏବଂ ତୃତୀୟଥର ପାଇଁ ସେମାନେ ବିବାହ ବନ୍ଧନରେ ଆବଦ୍ଧ ହେଲେ । ମାତ୍ର କେତୋଟି ମାସ ପାଇଁ ଏହି ବିବାହ ସ୍ଥାୟୀ ହୋଇଥିଲା । ୧୯୮୨ ଅକ୍ଟୋବର ମାସରେ ସେମାନେ ଶେଷଥର ପାଇଁ ପରସ୍ପର ଠାରୁ ଅଲଗା ହୋଇଗଲେ । ଏହାର କିଛିଦିନ ପରେ ଅତ୍ୟଧିକ ମଦ୍ୟପାନ ଯୋଗୁଁ ବର୍ଟନ ମୃତ୍ୟୁବରଣ କରିଥିଲେ । ସେତେବେଳକୁ ଲିଜ୍‌ଙ୍କୁ ୫୫ ବର୍ଷ । ତାଙ୍କର ମନ ପୁଣି ଗୋଟିଏ ପୁରୁଷ ବନ୍ଧୁ ପାଇଁ ତତ୍ପର ହୋଇଉଠିଲା । ୧୯୮୭ ଶେଷଆଡ଼କୁ ତାଙ୍କର ସମ୍ପର୍କ ଗଢ଼ିଉଠିଲା ଆମେରିକାର ଏକ ପ୍ରତିଷ୍ଠିତ ବ୍ୟବସାୟିକ ପତ୍ରିକା ଫୋର୍ବସର ପ୍ରକାଶକ ମାଲକମ୍ ଫୋର୍ବସଙ୍କ ସହିତ । ସେତେବେଳକୁ ଲିଜ୍‌ଙ୍କର ପୁତ୍ର-କନ୍ୟା, ନାତିନାତୁଣୀମାନେ ବଡ଼ ବଡ଼ ହୋଇଗଲେଣି । ତଥାପି ଏହି ବୟସ୍କା ମହିଳାଜଣଙ୍କ ପୁରୁଷ ବିନା ଜୀବନକୁ ତୁଚ୍ଛ ମନେ କରୁଥିଲେ । ରୋମାନ୍‌ସ ହିଁ ଥିଲା ତାଙ୍କ ଜୀବନର ପ୍ରଧାନ ଅଙ୍ଗ ।

ଲିଜ୍‌ଙ୍କ ପ୍ରେମ ଥିଲା ଏକ ତୃଷ୍ଣା । ଏ ତୃଷ୍ଣାର ଶେଷ ନଥିଲା । କୌଣସି ପୁରୁଷ ଏ ତୃଷ୍ଣାର ପରିପୂର୍ତ୍ତି କରିବା ଦିଗରେ ସକ୍ଷମ ହୋଇପାରି ନଥିଲେ। ତେଣୁ ଲିଜ୍ ଖୋଜି ବୁଲୁଥିଲେ ଗୋଟିଏ ପରେ ଗୋଟିଏ ନୂତନ ନକ୍ଷତ୍ର । ରୋମାନ୍‌ସ ପାଇଁ ଏବଂ ପ୍ରେମ ପାଇଁ ବିଶ୍ୱରେ ଥିଲେ ଏକମାତ୍ର ଅଭିନେତ୍ରୀ, ଯେ କି ସବୁଠାରୁ ଅଧିକ ଅର୍ଥ ଦାବି କରୁଥିଲେ। ତାଙ୍କ ସାକ୍ଷାତ ପାଇଁ ପ୍ରଡ୍ୟୁସର ଏବଂ ଡାଇରେକ୍ଟରମାନଙ୍କୁ ଘଣ୍ଟା ଘଣ୍ଟା ଅପେକ୍ଷା କରିବାକୁ ପଡୁଥିଲା । ମାତ୍ର ୧୩ ବର୍ଷ ବୟସରୁ ସେ ବିଶ୍ୱ ପ୍ରସିଦ୍ଧ ଫିଲ୍ମ ଅଭିନେତ୍ରୀ ହୋଇପାରି ଥିଲେ ।

ଲିଜ୍‌ଙ୍କର ଏକ ଅସାଧାରଣ କୁକୁର ପ୍ରିତି ଥିଲା । ଦଶଟି କୁକୁର ପାଇଁ ସେ ବହୁତ ଅର୍ଥ ବ୍ୟୟ କରୁଥିଲେ। ସେ ଫେସନ ଏବଂ ଡ୍ରେସକୁ ଖୁବ୍ ଭଲ ପାଉଥିଲେ। ବିଶ୍ୱର ବିଭିନ୍ନ ସ୍ଥାନରୁ ତାଙ୍କର ଡ୍ରେସ ମଗାଯାଉଥିଲା । ସେ ଡାଇମଣ୍ଡକୁ ଖୁବ୍ ଭଲପାଉଥିଲେ। ତାଙ୍କ ନିଜର ଏତେ ପରିମାଣର ସମ୍ପତ୍ତି ଠୁଳ ଅଛି ଯେ, ସେ ସ୍ୱାମୀମାନଙ୍କର ଧନସମ୍ପତ୍ତି ପାଇଁ ଆଦୌ ଲାଳାୟିତ ନୁହଁନ୍ତି । ସ୍ୱାମୀମାନଙ୍କ ପ୍ରତିଷ୍ଠିତ ଅନେକ ଟ୍ରଷ୍ଟର ସେ ମଧ୍ୟ ଅଧିକାରିଣୀ ।

ବାରମ୍ବାର ସମ୍ବାଦର ଶିରୋନାମା ପଢିବାରେ ହୁଏତ କେତେକଙ୍କୁ ଅହେତୁକ ଆନନ୍ଦ ମିଳିଥାଏ। ନହେଲେ ଏମିତି କାହିଁକି ହୁଏ କହୁନାହାନ୍ତି । ଯେଉଁ ବୟସରେ ମଣିଷ ସଂସାର ଧର୍ମତ୍ୟାଗ କରିବା କଥା, ସେ ବୟସରେ ବି ଜଣେ କ'ଣ ବିବାହ ପରିକା କର୍ମବ୍ୟସ୍ତ ଜୀବନ ଜଞ୍ଜାଳରେ ନିଜକୁ ଜଡ଼ିତ କରିବାକୁ ଚାହାନ୍ତା । ଏକଥା ପୁଣି ଆଉ କାହା ପାଖରେ ନୁହେଁ ପ୍ରସିଦ୍ଧ ବିଦେଶୀ ଅଭିନେତ୍ରୀ ଏଲିଜାବେଥଙ୍କ ଜୀବନରେ ଦେଖା ଦେଇଛି। ଏଲିଜାଙ୍କୁ ବୟସ ୫୯ ବର୍ଷ ହୋଇଥିବା ବେଳେ ସେ ଯାହାକୁ ବିବାହ କଲେ ସେ ହେଲେ କନ୍‌ଷ୍ଟ୍ରେକ୍ସନ୍‌ଙ୍କ ୱାର୍କର ଲୈରୀ ଫୋରେନ୍‌ସକୀ। ବୟସ ୩୯ ତା ମାନେ ୨୦ ବର୍ଷର ବ୍ୟବଧାନ ।

ଅବଶ୍ୟ ଏକଥା ଶୁଣୁ ଶୁଣୁ କେହି କେହି ଅବିଶ୍ୱାସ କରିପାରନ୍ତି, ଆଶ୍ଚର୍ଯ୍ୟ ହୋଇ ପାରନ୍ତି। କିନ୍ତୁ ଏହା ସତ। ଅପ୍ରିୟ ସତଟା ବେଳେବେଳେ ଏମିତି ଅବିଶ୍ୱାସ ମନେହୁଏ। ହଁ, ଏ ବିବାହଟା ସମ୍ଭବ ହୋଇଛି ଏଇ କାରଣରୁ, ବୟସଗତ ଏତେ ତାରତମ୍ୟ ଥିଲେ ମଧ୍ୟ ସେମାନେ ପ୍ରମିକ-ପ୍ରମିକା। ତାପରେ

ଏଲିଜାଙ୍କ କ୍ଷେତ୍ରରେ ସମ୍ଭବ ହେଲା କେବଳ ଏଇଥିପାଇଁ ଯେ ଏଲିଜା ହିଁ ଏକଦା ଘୋଷଣା କରିଥିଲେ, ସେ ଆଉଥରେ ବିବାହ କରିବାକୁ ଚାହାନ୍ତି । ଯାହାକି ୮ମ ବିବାହ ହେବ ଏବଂ ସେ ବିବାହ ସବୁଦିନ ପାଇଁ ଅବିଚ୍ଛେଦ୍ୟ ହୋଇରହିବ ।

ବିବାହ ଅନୁଷ୍ଠିତ ହୋଇଥିଲା ଅକ୍ଟୋବର ୫ ତାରିଖରେ । ଆଉ ଗୋଟାଏ କଥା ଉଭୟଙ୍କର ଏ ଚର୍ଚ୍ଚିତ ବିବାହ ସମ୍ବାଦ ଯୋଡ଼ିବା ଅନ୍ତରାଳରେ ଅଛନ୍ତି ପ୍ରସିଦ୍ଧ ଆମେରିକୀୟ କଣ୍ଠଶିଳ୍ପୀ ମାଇକେଲ ଜ୍ୟାକ୍‌ସନ୍ ।

ବର୍ତ୍ତମାନ ଦେଖିବା କଥା ଏ ବିବାହଟି କେତେଦୂର ସଫଳ ସାବ୍ୟସ୍ତ ହୋଇପାରୁଛି । କାରଣ ପ୍ରେମ ସମ୍ପର୍କରେ ସେମାନେ ଉଭୟ ଉଭୟଙ୍କ ପାଖାପାଖି ହୋଇଥିଲେ ମଧ୍ୟ ବିବାହ ଯେ ଅମଳିନ ହୋଇ ରହିବ - ସେମିତି କିଛି ମାନେ ନାହିଁ । ଯେହେତୁ ଏହା ପୂର୍ବରୁ ଏଲିଜା ସାତ ଥର ବିବାହ କରିଛନ୍ତି ହେଲେ କାହାରିକୁ ଆପଣାର କରିପାରି ନାହାନ୍ତି ।



# ମୁସୋଲିନୀଙ୍କ ପିଆଲାରେ 'କ୍ଲାରା' (ଇଟାଲୀ)

ଏକଛତ୍ରବାଦର ନାମ ଉଚ୍ଚାରଣ କଲାମାତ୍ରେ ଆମ ଆଖି ଆଗରେ ନାଚିଉଠେ କେତେକଙ୍କ ନାମ। ସେମାନଙ୍କ ମଧ୍ୟରେ ସର୍ବ ପ୍ରଥମେ ଆସନ୍ତି ମୁସୋଲିନୀ। ବିଶ୍ୱରେ ସେ ହେଉଛନ୍ତି ଫାସିଷ୍ଟ ଏକଛତ୍ରବାଦର ଜନ୍ମଦାତା। ବେନିଟୋ ମୁସୋଲିନୀ। ୩୯ ବର୍ଷ ବୟସରେ ସେ ୧୯୨୨ରେ ଇଟାଲୀରେ ଶାସନ କ୍ଷମତା ଅଧିକାର କରିବସନ୍ତି। ଏକଛତ୍ରବାଦର ଝୁଙ୍କ ତାଙ୍କୁ ମରଣର ଜନ୍ତା ମୁହଁକୁ ପେଲିଦିଏ।

**ଇତିହାସ ତାଙ୍କୁ ଦେଇଛି ଏକଛତ୍ରବାଦୀ ଶାସକର ଆଖ୍ୟା। ଶିକ୍ଷିତ ସମାଜ ତାଙ୍କୁ ଦେଇଛି ଜଣେ ଆଦର୍ଶ ବକ୍ତାର ସମ୍ମାନ। ହେଲେ ବିଶ୍ୱ ତାଙ୍କୁ ଆଣି ଦେଇଛି ଗୋଟିଏ ଚୀର ସବୁଜ ହସନ୍ତ ପ୍ରେମିକର ମର୍ଯ୍ୟାଦା। ପ୍ରେମ ବନାମ୍ ମୃତ୍ୟୁର ଇଲାକାରେ ସେ ସୃଷ୍ଟି କରିଯାଇଛନ୍ତି ଇତିହାସର ଇତିହାସ। ମୁସୋଲିନୀ...ଏକ ଶେଷହୀନ ଉଚ୍ଚାରଣ...**

ସେ ଥିଲେ ବିଶ୍ୱର ଜଣେ ଏକନମ୍ବର ବକ୍ତା। ତାଙ୍କର ଭାଷଣରେ ଏକ ଅପୂର୍ବ ଯାଦୁ ଥିଲା। ଅଳ୍ପ ସମୟ ମଧ୍ୟରେ ସେ ଅନ୍ୟର ହୃଦୟକୁ ଏହାରି ମାଧ୍ୟମରେ ଜୟକରି ପାରୁଥିଲେ। ରଣରଙ୍କ ଏହି ମଣିଷଟିର ମଧ୍ୟ ଅପୂର୍ବ ଝୁଙ୍କ ଥିଲା। ତାଙ୍କ ଜୀବନରେ ଦୁଇଟି ରମଣୀ ଆସ୍ଥାନ ଜମାଇ ବସିଥିଲେ। ଜଣେ ହେଉଛି ତାଙ୍କ ସ୍ତ୍ରୀ ରାସେଲି ଏବଂ ଅନ୍ୟଜଣେ ହେଉଛି ପ୍ରେମିକା କ୍ଲାରା ପେଟାସୀ। ମୁସୋଲିନୀଙ୍କୁ ଏକାନ୍ତ ନିଜର କରିବାକୁ ଯାଇ ହାରିଯାଇଥିଲେ ପତ୍ନୀ ରାସେଲି ଏବଂ ଯୌବନର ଜୁଆ ଖେଳରେ ଜିତିଯାଇଥିଲେ କ୍ଲାରା।

ମୁସୋଲିନୀଙ୍କ ଏକଜିଦିଆ ସ୍ୱଭାବ ତାଙ୍କ ପାଇଁ ଅନେକ ଶତ୍ରୁ ସୃଷ୍ଟି କରିଥିଲା। ଇଟାଲୀର ରାଜା, ଏପରିକି ତାଙ୍କ ନିଜ ଦଳର ଅନେକ ମଧ୍ୟ ତାଙ୍କୁ ବିରୋଧ କରୁଥିଲେ। ମିତ୍ରଶକ୍ତି ବିରୁଦ୍ଧରେ ଯୁଦ୍ଧ ଘୋଷଣା ଥିଲା ତାଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ଭୁଲ୍। ସମସ୍ତ ବିପଦ ଆପଦ ସମୟରେ ମୁସୋଲିନୀଙ୍କୁ ସାଥି ଦେଇଥିଲେ ପ୍ରେମିକା କ୍ଲାରା। ବହୁ ବିଳମ୍ବରେ ସେମାନଙ୍କ ସମ୍ପର୍କ କଥା ରାସେଲି ଜାଣିବାକୁ ପାଇଲେ। ଗାଡ଼ାଲେକ୍ ହେଡ଼କ୍ୱାଟରରେ କ୍ଲାରା ରହୁଥିବା ବେଳେ ହଠାତ୍ ୫୦ ଜଣ ଇଟାଲୀୟ ସୈନ୍ୟଙ୍କୁ ଏକ ଟ୍ରକରେ ଧରି ରାସେଲି ପହଞ୍ଚିଲେ କ୍ଲାରାଙ୍କ

ପ୍ରାସାଦ ନିକଟରେ। ପ୍ରାସାଦର ଲୌହ ଗେଟ ନିକଟରେ ପହଞ୍ଚି ଗେଟ୍ ଖୋଲିବା ପାଇଁ କ୍ଲାରାଙ୍କ ବଡିଗାର୍ଡ ଫ୍ରାଞ୍ଜ ଷ୍ଟୋଗଲରଙ୍କୁ କହିଲେ। କିଛି ସମୟ ଅପେକ୍ଷା କରିବାକୁ ଫ୍ରାଞ୍ଜ କହିବାରୁ ରାଗରେ ଗର୍ଜନ କରିଉଠିଲେ ରାସେଲି। ଏକ ତିନି ମିଟର ଉଚ୍ଚ ଗେଟକୁ ଭାଙ୍ଗିବାକୁ ଆଗେଇଗଲେ।

ଷ୍ଟୋଗଲର୍ ମୁସୋଲିନୀଙ୍କୁ ଫୋନ୍ କରି ଅନୁମତି ପାଇବାପରେ କ୍ଲାରାଙ୍କ ସହିତ ଦେଖା କରିବାକୁ ରାସେଲିଙ୍କୁ ଛାଡ଼ି ଦେଇଥିଲେ। ଇତ୍ୟବସରରେ ମୁସୋଲିନୀ କ୍ଲାରାଙ୍କ ସହିତ ଫୋନରେ କଥାବାର୍ତ୍ତା କରି ସାରିଥିଲେ। କ୍ଲାରାଙ୍କ ପରିଧାନ ଦେଖି ଇର୍ଷାରେ ଜଳିଯାଇଥିଲେ ରାସେଲି। ସେ ନିଜକୁ ତୁଳନା କରି ବସିଥିଲେ କ୍ଲାରେଟାଙ୍କ ସହିତ। ଜଣେ ରାଷ୍ଟ୍ରମୁଖ୍ୟଙ୍କ ପତ୍ନୀ ହିସାବରେ ଯାହା ମୁଁ ପିନ୍ଧୁପାରୁନି, ରକ୍ଷିତା ହୋଇ ଏସବୁ ତମ ପକ୍ଷରେ ଶୋଭା ପାଏନା। 'ରକ୍ଷିତା' ଶବ୍ଦ ଉଚ୍ଚାରଣ କ୍ଷଣି ଭୀଷଣ କ୍ଷୁବ୍ଧ ହୋଇଥିଲେ କ୍ଲାରା। ସଙ୍ଗେ ସଙ୍ଗେ ନିଜର ବଡିଗାର୍ଡକୁ ନିର୍ଦ୍ଦେଶ ଦେଇଥିଲେ କ୍ଲାରା ପେଟାସୀ ଏଇ ଉଦ୍ଧତ ନାରୀକୁ ତାଙ୍କ ସମ୍ମୁଖରୁ ବାହାର କରିଦେବାକୁ।

'ରକ୍ଷିତା' ଆକ୍ଷେପରେ ଭାଙ୍ଗିପଡ଼ିଥିଲେ କିଛି ସମୟ ପାଇଁ କ୍ଲାରେଟା। ହିଂସ୍ର ବାଘୁଣୀ ପରି ଚିତ୍କାର କରି ଉଠିଥିଲେ ରାସେଲି - ନିଜ ପାଇଁ ରାଷ୍ଟ୍ର ପାଇଁ ଏବଂ ରାଷ୍ଟ୍ରମୁଖ୍ୟଙ୍କ ସମ୍ମାନ ପାଇଁ ଅତି ଶୀଘ୍ର ଏ ସ୍ଥାନ ଛାଡ଼ି ଚାଲିଯାଅ। ମୁସୋଲିନୀଙ୍କ ସହିତ ଏହା ହିଁ ତମର ଶେଷ ସମ୍ପର୍କ ହେଉ। ପେଟାସୀ ଲକ୍ଷ୍ୟ କରିଥିଲେ, ରାସେଲି ଆକ୍ଷେପରେ ଗୋଟିଏ ପରେ ଗୋଟିଏ ପାହାଚ ଆଗେଇ ଯାଉଛନ୍ତି। ସେ ଆଉ ଅଧିକ କାଳ ଅପେକ୍ଷା ନ କରି ଉତ୍ତର ଦେଇଥିଲେ ରାଷ୍ଟ୍ରମୁଖ୍ୟ କାହାକୁ ଚାହାନ୍ତି, କିଏ ତାଙ୍କର ଆବଶ୍ୟକ, ତାଙ୍କ ଚିଠି ସବୁ ଦେଖିଲେ ତମେ ଠିକ୍ ଜାଣିପାରିବ। ପରେ ପରେ କ୍ଲାରା ଚିଠିର କେତେକ ଅଂଶ ଦେଖାଇବା ପାଇଁ ମୁସୋଲିନୀଙ୍କୁ ଅନୁମତି ମାଗିଥିଲେ। ରାଷ୍ଟ୍ରମୁଖ୍ୟଙ୍କର ଏଥିରେ ଆପତ୍ତି ନଥିଲା।

କିଛି ସମୟ ପରେ କ୍ଲାରା ମୁସୋଲିନଙ୍କ ହାତଲେଖା ଗୋଛାଏ ଚିଠି ଆଣି ପଢ଼ି ଶୁଣାଇଥିଲେ ରାସେଲୀଙ୍କୁ, ସେତେବେଳକୁ ରାସେଲି ନିଜ ଭିତରେ ଶତ ବୃଶ୍ଚିକର ଯନ୍ତ୍ରଣା ଅନୁଭବ କରୁଥାନ୍ତି। ସେ ଚିଠିତକ ଝାମ୍ପି ନେବାକୁ ଚେଷ୍ଟା କରି ବିଫଳ ହୋଇଥିଲେ। ଏଥିରେ ବାଧା ଦେଇଥିଲେ କ୍ଲାରାଙ୍କ ବଡ଼ିଗାର୍ଡ

ଷୋଗଲର । ଭୟ ଏବଂ ଘୃଣାରେ ଥରୁଥାନ୍ତି ରାପେଲି । ସେ ଅନୁଭବ କରିଥିଲେ ବାସ୍ତବରେ ସ୍ତ୍ରୀ ହିସାବରେ ସେ ମୁସୋଲିନୀଙ୍କୁ ଚାହାନ୍ତି । ପ୍ରେମ ପାଇଁ ମୁସୋଲିନୀ କିନ୍ତୁ କ୍ଲାରାଙ୍କୁ ଚାହାନ୍ତି । ଉଭୟ କ୍ଲାରା ଏବଂ ମୁସୋଲିନୀଙ୍କୁ ଅଭିଶାପ ବର୍ଷଣ କରି ଫେରି ଆସିଥିଲେ ରାପେଲି ରୋମ୍‌ରେ ଥିବା ନିଜ ଘରକୁ । ସ୍ୱାମୀଙ୍କ ପାଖକୁ ଫେରିବାକୁ ସେ ଆଉ ଉଚିତ ମଣିନଥିଲେ । ସେ ଜାଣିଥିଲେ, ମୁସୋଲିନୀଙ୍କ ସହିତ କାଳାତିପାତ କରିବା ଅର୍ଥ ଶତ୍ରୁ ହାତରେ ପ୍ରାଣ ବିସର୍ଜନ ଦେବା । ଜୀବନର ଶେଷ ପର୍ଯ୍ୟନ୍ତ ରାପେଲି ଏଇ ରୋମ୍ ନିବାସରେ ଅବସ୍ଥାନ କରିଥିଲେ ।

ରାପେଲିଙ୍କ ଅଭିଶାପ ସଫଳ ହୋଇଥିଲା । ମୁସୋଲିନୀଙ୍କ ଦିନ ପାଖେଇ ଆସୁଥିଲା । ହିଟଲରଙ୍କ ସୈନ୍ୟଦଳ ତାଙ୍କୁ ଏକାକୀ ଛାଡ଼ିକରି ଚାଲିଯାଇଥିଲେ। ତାଙ୍କ ନିଜ ସୈନ୍ୟମାନେ ମଧ୍ୟ ଆଉ ଅଧିକ କାଳ ଏକ ଅନିଶ୍ଚିତ ଆଶଙ୍କା ପଛରେ ଅଧିକ ବାଟ ଆଗେଇବାକୁ ପସନ୍ଦ କରିନଥିଲେ। କିପରି କେଉଁଠି ଆତ୍ମଗୋପନ କରିବେ, ମୁସୋଲିନୀ କିଛି ଚିନ୍ତା କରିପାରିନଥିଲେ। ପାହାଡ଼ର ଅଙ୍କାବଙ୍କା ପଥରେ ସେ ଆଗେଇବାକୁ ମନସ୍ଥ କରି ପାରିଥିଲେ। ସାଥିରେ କ୍ଲାରାଙ୍କୁ ନେବାକୁ ସେ ରାଜିହୋଇ ନଥିଲେ। କିନ୍ତୁ କ୍ଲାରା ତାଙ୍କ ପ୍ରେମିକକୁ ଏକା ଏକା ସେହି ଭୟସଙ୍କୁଳ ପଥରେ ଛାଡ଼ି ଦେବାକୁ ଚାହିଁନଥିଲେ। ସେ ମଧ୍ୟ ତାଙ୍କର ଅନୁଗମନ କରିଥିଲେ। ସେତେବେଳକୁ ମୁସୋଲିନୀଙ୍କୁ ଧରିବା ପାଇଁ ବିଦ୍ରୋହୀମାନେ ସବୁ ରାସ୍ତା ଅବରୋଧ କରି ପାରିଥିଲେ। ଦୁର୍ଦ୍ଦିନର ଶେଷ ପାହାଚରେ ପହଞ୍ଚି ମୁସୋଲିନୀ ତାଙ୍କର ପତ୍ନୀ ରାପେଲିଙ୍କ ପାଖକୁ ଚିଠି ଲେଖିଥିଲେ। ଏହା ଥିଲା ତାଙ୍କର ଶେଷ ଚିଠି।

"ପ୍ରାଣାଧିକା ରାପେଲି,

ତମ ପାଖକୁ ଏହି ବୋଧହୁଏ ମୋର ଅନ୍ତିମ ପତ୍ର । ମୋ ଜୀବନ ନାଟକର ଶେଷ ଦୃଶ୍ୟରେ ମୁଁ ପହଞ୍ଚି ଯାଇଛି । ମୁଁ ଯଦି ମୋ ଅଜାଣତରେ ତମର କ୍ଷତି କରିଥାଏ, ନିଶ୍ଚୟ କ୍ଷମା କରିବ । ତେବେ ତମେ ହେଉଛ ଏକମାତ୍ର ନାରୀ, ଯାହାଙ୍କ ପାଖରୁ ମୁଁ କିଛିଟା ସ୍ନେହ ଦାବି କରେ ।" ମୁସୋଲିନୀଙ୍କ ପରାଜୟ ପଛରେ ଦୁଇଟି କାରଣ ଥିଲା । ପ୍ରଥମ ହେଲା ଶତ୍ରୁ ଏବଂ ଦ୍ୱିତୀୟ ହେଲା ତାଙ୍କ ପ୍ରେମିକା କ୍ଲାରା ପେଟାସୀ । ମୁସୋଲିନୀଙ୍କ ବାସ୍ତବ ପ୍ରେମ ଥିଲେ ରାପେଲି କିନ୍ତୁ ନିଜେ ମୁସୋଲିନୀ ଥିଲେ, କ୍ଲାରାଙ୍କ ପ୍ରେମପାତ୍ର ।

ଗୁପ୍ତ ପଥରେ ମୁସୋଲିନୀଙ୍କୁ ଗିରଫ କରାଯାଇ ଡଙ୍ଗୋ ଟାଉନ୍‌ହଲକୁ ନିଆଗଲା । ସେଠାରୁ ତାଙ୍କୁ ଫିନାନ୍‌ସ ଗାର୍ଡସ ବରାକ୍‌ର ଅଉ ଏକ ପ୍ରକୋଷ୍ଠକୁ ସ୍ଥାନାନ୍ତରିତ କରାଯାଇଥିଲା । ମାତ୍ର ଟାଉନ୍‌ହଲଠାରେ ବନ୍ଦୀ ହୋଇଥିଲେ କ୍ଲାରା । ସେ ସାମରିକ କର୍ତ୍ତୃପକ୍ଷଙ୍କୁ ଅନୁରୋଧ କରିଥିଲେ, ଯଦି ମୁସୋଲିନୀଙ୍କୁ ଗୁଳିବିଦ୍ଧ କରାଯାଏ। ତେବେ ଶେଷ, ପର୍ଯ୍ୟନ୍ତ ସେ ତାଙ୍କ ପାଖରେ ରହିବେ। କାରଣ ମୁସୋଲିନୀଙ୍କୁ ଛାଡ଼ି ତାଙ୍କ ଜୀବନ ମୂଲ୍ୟହୀନ। ତେଣୁ ମୁସୋଲିନୀଙ୍କ ସହିତ ତାଙ୍କୁ ବି ମରିବାର ସୁଯୋଗ ଦିଆଯାଉ।

ବିଦ୍ରୋହୀ କମାଣ୍ଡର ୱାଲଟର ଅଡ଼ିଶୋ ଧରାପଡ଼ିଥିବା ସମସ୍ତ ବନ୍ଦୀଙ୍କ ସହିତ ମୁସୋଲିନୀଙ୍କୁ ହତ୍ୟା କରିବାକୁ ଆଦେଶ ଦେଇଥିଲେ। ସେମାନଙ୍କ ମଧ୍ୟରେ କ୍ଲାରା ବି ଥିଲେ। କ୍ଲାରାଙ୍କ ଅନୁରୋଧରେ ଶେଷ ରାତ୍ରିଟି ମୁସୋଲିନୀ ଏବଂ କ୍ଲାରାଙ୍କୁ ମିଳିତ ହେବାକୁ ସାମରିକ କର୍ତ୍ତୃପକ୍ଷ ସୁଯୋଗ ଦେଇଥିଲେ। ଜୀବନର ଶେଷ ପାହାଚରେ ପହଞ୍ଚିଥିଲେ ବି ଏହି ପ୍ରେମିକ ପ୍ରେମିକା ପରସ୍ପରକୁ ବହୁଦିନ ପରେ ଭେଟୁଥିବା ଭଳି ଅଭିବାଦନ ଜଣାଇଥିଲେ। ମୁସୋଲିନୀ ଦୁଃଖ କରୁଥିଲେ କ୍ଲାରାଙ୍କ ପାଇଁ। କିନ୍ତୁ କ୍ଲାରା ବେଶ୍ ପ୍ରଫୁଲ୍ଲ ଥିଲେ। ଉଭୟ ପ୍ରେମିକ ପ୍ରେମିକା ସେହି ରାତ୍ରିଟି ପରସ୍ପର ବାହୁବନ୍ଧନ ମଧ୍ୟରେ କଟାଇଥିଲେ। ପରଦିନ ସକାଳେ ଅଡ଼ିସୋ ମୁସୋଲିନୀଙ୍କ ମୃତ୍ୟୁଦଣ୍ଡ ଘୋଷଣା କଲେ। ସେତେବେଳକୁ ମୁସୋଲିନୀ ନୀରବ ଥିଲେ। କିନ୍ତୁ କ୍ଲାରା ପାଗଳୀଙ୍କ ଭଳି ଡେଇଁ ଡେଇଁ ମୁସୋଲିନୀଙ୍କ ଆଗରେ ଠିଆହୋଇ ଚିତ୍କାର କରୁଥିଲେ ଅସମ୍ଭବ। ତମେ ଏପରି କେବେ କରିପାରିବ ନାହିଁ। ଅଡ଼ିସୋ ଚିତ୍କାର କରିଥିଲେ, ମୁସୋଲିନୀଙ୍କଠାରୁ ଅଲଗା ହୋଇ ଯିବାକୁ, କିନ୍ତୁ କ୍ଲାରା ସେ ଆଦେଶ ମାନିବାକୁ ନାରାଜ। ମୁସୋଲିନୀ ପ୍ରାର୍ଥନା କଲେ ତାଙ୍କ ଛାତିରେ ଗୁଳିବିଦ୍ଧ କରିବା ପାଇଁ। ବନ୍ଧୁକର ବାରେଲକୁ ଅଟକାଇବାକୁ ଚେଷ୍ଟାକରି ବିଫଳ ହେଲେ କ୍ଲାରା। ଅଡ଼ିସୋ ତିନି ରାଉଣ୍ଡ ଗୁଳି ଚଳାଇଥିଲେ। ପ୍ରଥମେ ଟଳି ପଡ଼ିଥିଲେ କ୍ଲାରା। ପରେ ପରେ ପ୍ରେମିକାଙ୍କ ବାହୁରେ ଟଳି ପଡ଼ିଥିଲେ ମୁସୋଲିନୀ। ଉଭୟ ଏକ ପ୍ରଶାନ୍ତ ନିଦ୍ରାରେ ଶୋଇ ଯାଇଥିଲେ ଅନନ୍ତ କାଳ ପାଇଁ.........।



# ପ୍ରେମ ପାରାବାରରେ 'ଲି'-'ବେଲଫ୍ରଏ'

କମ୍ୟୁନିଷ୍ଟ ଚୀନ ପାଇଁ ଗଣତନ୍ତ୍ରର ସ୍ୱପ୍ନ ଥିଲା ଏକ ବିରାଟ ଚାଲେଞ୍ଜ। ଯେଉଁମାନେ ଏହି ସ୍ୱପ୍ନ ଦେଖିଥିଲେ, ସେମାନଙ୍କୁ ଶହୀଦ ହେବାକୁ ପଡ଼ିଥିଲା। କିମ୍ବା କାରାଗାରରେ ଆଜୀବନ ବନ୍ଦୀ ହେବାକୁ ପଡ଼ିଥିଲା। ଏହି ଗଣତନ୍ତ୍ରର ସେହି ଦୁଃଖଦ ସ୍ୱପ୍ନ ଦେଖିଥିଲା ଚୀନର ଏକ କୁଆଁରୀ କନ୍ୟା ଲି ସୁଆଙ୍ଗ। ଫ୍ରାନ୍ସ, ବ୍ରିଟେନ ଭଳି ସେ ଚାହିଁଥିଲା ଚୀନରେ ଗଣତନ୍ତ୍ରର ବାସନା ମହକାଇବାକୁ। ଚୀନର ଏକଛତ୍ରବାଦୀ ଶାସନର ଘୋର ବିରୋଧ କରିଥିଲା ଲି। ଚୀନର ଶାସକ ତା' ଉପରେ ଏଇଥିପାଇଁ ପ୍ରଥମରୁ ବିରକ୍ତି ପ୍ରକାଶ କରିଥିଲେ। ତା' ବିରୁଦ୍ଧରେ ବଡ଼ ଅଭିଯୋଗ ଥିଲା; ସେ ବାହାର ଦେଶମାନଙ୍କରୁ ଆର୍ଥିକ ସାହାଯ୍ୟ ପାଇ ଦେଶରେ କମ୍ୟୁନିଷ୍ଟ ବିରୋଧୀ ଆନ୍ଦୋଳନକୁ ଉସ୍କାଉଛି। ସାର୍ତ୍ରେଙ୍କ ପ୍ରତିଷ୍ଠିତ ପତ୍ରିକା 'ଲିବରେସନ'ରେ ଲି'ର ଗଣତନ୍ତ୍ରବାଦୀ ଲେଖାମାନ ପ୍ରକାଶ ପାଇଥିଲା। ଏଥିପାଇଁ ଫ୍ରାନ୍ସରେ ଥିବା ଚୀନର ରାଷ୍ଟ୍ରଦୂତ ଫ୍ରାନ୍ସ ସରକାରଙ୍କୁ ବାରମ୍ବାର ଲିବରେସନକୁ ତାର କାର୍ଯ୍ୟପନ୍ଥାରୁ ନିବୃତ ରହିବା ପାଇଁ ଅନୁରୋଧ କରିଥିଲେ। ଏମିତି ଅନେକ କାରଣରୁ ଚୀନର କମ୍ୟୁନିଷ୍ଟ ସରକାର ତାଙ୍କ ଉପରେ ଖଡ୍ଗହସ୍ତ ହୋଇଥିଲେ।

> ଗଣତନ୍ତ୍ରର ମହକରେ ମତୁଆଲା ହୋଇ ଉଡ଼ି ବୁଲୁଥିବା ଲି ପ୍ରଥମ ଥର ପାଇଁ ବେଲଫ୍ରଏଙ୍କୁ ଭେଟିଥିଲେ ଦୂତାବାସ ଅଫିସରେ। ଚାରି ଚକ୍ଷୁର ମିଳନରେ ଅନେକ ଅକୁହା କଥା ସେଦିନ କୁହା ହୋଇଥିଲା। ବେଲଫ୍ରଏ ତ ଥିଲେ ଗଣତନ୍ତ୍ରର ପୂଜାରୀ। ତାଙ୍କଠାରୁ ସବୁ ପ୍ରକାର ସାହାଯ୍ୟ ସହାନୁଭୂତି ମିଳିଥିଲା 'ଲି'ଙ୍କୁ। ଏକ ଅଳସ ଅପରାହ୍ନରେ ଲି ସାକ୍ଷାତ କରିଥିଲେ ବେଲଫ୍ରଏଙ୍କୁ। ସେତେବେଳକୁ ଫରାସୀ ଯୁବକ ଜଣକ ଭାବନା ରାଜ୍ୟରେ ଥିଲେ। ମନେ ମନେ ଭାବୁଥିଲେ ସେହି ତରୁଣୀଙ୍କ କଥା।

ବେଜିଂଠାରେ ଥିବା ଫରାସୀ ଦୂତାବାସକୁ ୧୯୭୬ରେ ଜଣେ ସୁନ୍ଦର ଫରାସୀ ଯୁବକ ଡିପ୍ଲୋମାଟ ଭାବେ ଆସିଲେ। ତାଙ୍କ ନାମ ଥିଲା ଇମାନୁଏଲ

ବେଲଫ୍ରଏ। ପ୍ରଥମ ଚାରିବର୍ଷ ବେଶ୍ ସଫଳ ଭାବେ ଅତିବାହିତ କରିଛନ୍ତି ଏହି ଯୁବକ ଇମାନୁଏଲ ବେଲଫ୍ରଏ। ୧୯୮୦ ଆରମ୍ଭରେ ତାଙ୍କ ଜୀବନ ଆକାଶରେ ହଠାତ୍ ଦେଖାଦିଅନ୍ତି ଜଣେ ଚାଇନା ସୁନ୍ଦରୀ। ଏହି ସୁନ୍ଦରୀ ଜଣକ ଅନ୍ୟ କେହି ନୁହଁନ୍ତି, ଲି ସୁଆଙ୍ଗ।

ହଠାତ୍ ନିଜ ଆଖି ଆଗରେ ଦେଖିବେ ବୋଲି ସେ କେବେ କଳ୍ପନା କରି ନଥିଲେ। ଆହୁରୀ ଆଶ୍ଚର୍ଯ୍ୟ ହୋଇଥିଲେ ଯେତେବେଳେ ଲି ତାଙ୍କ ସମ୍ମୁଖରେ ବିବାହ ପ୍ରସ୍ତାବ ଉତ୍‌ଥାପନ କଲେ।

ଲି ସୁଆଙ୍ଗ ଏବଂ ବେଲଫ୍ରଏଙ୍କ ସମ୍ପର୍କ ଗାଢ଼ରୁ ଗାଢ଼ତର ହେବାକୁ ଲାଗିଲା। ୧୯୮୧ ବେଳକୁ ସେମାନେ କେହି କାହାକୁ ତିଳେ ହେଲେ ବି ପାଖରୁ ଅନ୍ତର କରିପାରିଲେନି। ମାତ୍ର ଦୁଃଖର କଥା ୧୯୮୧ ଡିସେମ୍ବର ମାସରେ ବେଲଫ୍ରଏଙ୍କ କାର୍ଯ୍ୟକାଳ ପୂରିଯାଉଥିଲା। ତେଣୁ ଉଭୟ ସେପ୍‌ଟେମ୍ବର ମାସରେ ବିବାହ ପାଇଁ ମନସ୍ଥ କଲେ। ଲି ଭାବିଥିଲେ ଏଇ ତିନି ଚାରିମାସ ମଧ୍ୟରେ ତାଙ୍କ ସ୍ୱାମୀଙ୍କ ଦେଶକୁ ଯିବାପାଇଁ ଫ୍ରାନ୍‌ସର ନାଗରିକ ଭାବରେ ଚୀନ ସରକାର ଅନୁମତି ଦେଇଦେବେ। ସେହି ଅନୁଯାୟୀ ଲି ମଧ୍ୟ ତାଙ୍କ ସ୍ୱାମୀଙ୍କ ଦୂତାବାସ କ୍ୱାର୍ଟରରେ ଜୁଲାଇ ମାସରୁ ରହୁଥିଲେ। ଅଗଷ୍ଟ ମାସରେ ଉଭୟ ବିବାହ ପ୍ରବନ୍ଧକଙ୍କ ଅଫିସରେ ବିବାହ ପାଇଁ ଦରଖାସ୍ତ ଦାଖଲ କରିଥିଲେ ଏବଂ ସେପ୍‌ଟେମ୍ବର ମାସରେ ବିବାହ ଦିବସ ସ୍ଥିର ପାଇଁ ଅନୁରୋଧ କରିଥିଲେ। କିନ୍ତୁ ଇତ୍ୟବସରରେ ଚୀନ ସରକାର ଲି'ଙ୍କ ଉପରେ ଗିରଫଦାରୀ ପରୱାନା ଜାରି କରିଥିଲେ। ମାତ୍ର ସେ ଦୂତାବାସରେ ରହୁଥିବାରୁ ଗିରଫ ସମ୍ଭବ ହୋଇପାରି ନଥିଲା।

ଚୀନ ସରକାର ଖୁବ୍ ଚାଲାଖର ସହିତ ଏକ ଖେଳ ଖେଳିଲେ। ମ୍ୟାରେଜ ସାର୍ଟିଫିକେଟ ପାଇବା ପାଇଁ ଲି'ଙ୍କୁ ରେଜିଷ୍ଟ୍ରାରଙ୍କ ଅଫିସରେ ବ୍ୟକ୍ତିଗତ ଭାବେ ଉପସ୍ଥିତ ହେବାପାଇଁ କୁହାଗଲା। ଦୂତାବାସ ଅଫିସରୁ ଲି ଯେମିତି ବାହାରକୁ ଆସିଛନ୍ତି, ସାଦା ପୋଷାକରେ ଥିବା ଚୀନ ପୋଲିସ ତାଙ୍କୁ ଗିରଫ କଲେ। ସାଙ୍ଗେ ସାଙ୍ଗେ ଲି'ଙ୍କୁ ଏକ ରିଫମେଟରୀ କ୍ୟାମ୍ପରେ ରଖାଗଲା। ଫ୍ରାନସ ଦୂତାବାସରେ ଖବର ଖେଳିଗଲା। ଫରାସୀ ରାଷ୍ଟ୍ରଦୂତ ଉଭୟ ଲି ଏବଂ ବେଲଫ୍ରଏଙ୍କ ବିବାହ ଚୀନ ବୈଦେଶିକ ମନ୍ତ୍ରୀଙ୍କୁ ଖୁବ୍ ଶୀଘ୍ର ସାରିବା ପାଇଁ ଅନୁରୋଧ କରିଥିଲେ

ଏବଂ ଏହା ମଧ୍ୟ ତାଙ୍କ ସରକାର ଚାହେଁ ବୋଲି ଜଣାଇଥିଲେ। ମାତ୍ର ଚୀନ ସରକାର ଜଣାଇଲେ ବେଲଫ୍ରଏଙ୍କୁ ପ୍ୟାରିସ ତୁରନ୍ତ ଫେରାଇ ନିଆଗଲେ ଘଟଣାର ଟେନସନ କମିଯିବ ଏବଂ ପରେ ଯେ କୌଣସି ସମୟରେ ସେମାନଙ୍କ ବିବାହ ସମ୍ଭବ ହୋଇପାରେ। ତଦନୁଯାୟୀ ଅକ୍ଟୋବର ମାସରେ ବେଲଫ୍ରଏ ପ୍ୟାରିସ ଫେରିଗଲେ।

ଚୀନ ସରକରାଙ୍କ ଚାଲବାଜି ଫରାସୀ ସରକାର ବୁଝିପାରି ନଥିଲେ। ଲିଂଙ୍କୁ ବିଭିନ୍ନ କେଶ୍‌ରେ ଜଡ଼ିତ କରାଗଲା। ମୋଟ ଉପରେ ଚୀନ ସରକାର ଲିଂଙ୍କ ବିବାହ ପ୍ରସଙ୍ଗଠାରୁ ଦୂରେଇ ରହିବାକୁ ଚାହୁଁଥିଲେ। ଚୀନ ଆଇନର ବିରୁଦ୍ଧାଚରଣ କରି ବେଲଫ୍ରଏ ଜଣେ ଚାଇନିଜ ମହିଳାଙ୍କୁ ସ୍ଥାନ ଦେଇଥିବାରୁ ତାଙ୍କ ବିରୁଦ୍ଧରେ ଗୁରୁତର ଅଭିଯୋଗ ହୋଇଥିଲା ଚୀନ କୋର୍ଟରେ। ଫ୍ରାନସର ବୈଦେଶିକ ମନ୍ତ୍ରୀ ଚୀନ ଗସ୍ତରେ ଥିବାବେଳେ ଲିଂଙ୍କୁ ବିଭିନ୍ନ ଅଭିଯୋଗରେ ଦୁଇବର୍ଷ ଜେଲ ଦଣ୍ଡ ଦିଆଯାଇ ଏକ ଆତ୍ମଶୁଦ୍ଧି କ୍ୟାମ୍ପକୁ ପଠାଇ ଦିଆଗଲା। ଫରାସୀ ମନ୍ତ୍ରୀଙ୍କୁ ଏହା ଖୁବ୍ ବାଧିଥିଲା। ସେ ଚୀନ ପ୍ରଧାନମନ୍ତ୍ରୀଙ୍କ ସହିତ ମଧ୍ୟ ଏ ସମ୍ପର୍କରେ ଆଲୋଚନା କରି ବିଫଳ ହୋଇଥିଲେ। ଚୀନକୁ ଫ୍ରାନସ ଦୁଇଟି ପରମାଣୁ ପ୍ଲାଣ୍ଟ ଯୋଗାଇଦେବା ବିଷୟରେ ନିଷ୍ପତ୍ତି ଗ୍ରହଣ କରିବାକୁ ଆସିଥିଲେ ଫରାସୀ ବୈଦେଶିକ ମନ୍ତ୍ରୀ। କିନ୍ତୁ ଚୀନ ସରକାର ଏହାକୁ ପ୍ରତ୍ୟାଖ୍ୟାନ କରି ନିଜ ଦେଶର ସମ୍ମାନ ବଞ୍ଚାଇବାକୁ ଅଗ୍ରସର ହୋଇଥିଲେ।

ଲିଂ ଆଉ ବେଲଫ୍ରଏଙ୍କ ପ୍ରେମ ପ୍ରସଙ୍ଗ ଏଭଳି ଏକ ମୋଡ଼ ନେଲା, ଯାହାଦ୍ୱାରା ଚୀନ-ଫ୍ରାନସର ଦ୍ୱିପାକ୍ଷିକ ସମ୍ପର୍କ ବ୍ୟାହତ ହୋଇଥିଲା। ଉଭୟ ପ୍ରେମିକ ପ୍ରେମିକା କେବେ ସ୍ୱପ୍ନରେ ମଧ୍ୟ ଭାବିନଥିଲେ ସେମାନଙ୍କ ପ୍ରେମ ଦୁଇଟି ବିରାଟ ଭୁଖଣ୍ଡ ମଧ୍ୟରେ ଏକ ତିକ୍ତତାର ପ୍ରାଚୀର ଛିଡ଼ା କରାଇଦେବ ବୋଲି।। ଚୀନ ସରକାରଙ୍କ ପକ୍ଷରୁ ବିଭିନ୍ନ ଅଭିଯୋଗର ଶୀକାର ହୋଇ ଲି ଦୁଃଖରେ ଦିନ ଗଣିବାକୁ ଲାଗିଲେ। ଆଉ ବେଲଫ୍ରଏ, ଆଖିରୁ ଲୁହ ଝରାଇବା ଛଡ଼ା ଅନ୍ୟ ଉପାୟ ତାଙ୍କର ନଥିଲା।

# ପ୍ୟାର ମାଁଗେ କୁର୍ବାନ

ପ୍ରେମ ଏକ ଶାଶ୍ୱତ ଅନୁଭବ। ଏହା ପ୍ରାଣୀକୁ ନବଜନ୍ମ ଦିଏ। ପ୍ରେମ ହିଁ ଜୀବନରେ ଭରିଦିଏ ନୂତନ ସ୍ୱାଦ। ପ୍ରେମ ପାଇଁ ଯୁବକ ଯୁବତୀ ଲାଘବ କରନ୍ତି ବୀରଦର୍ପରେ ସାମାଜିକ ବିଧିବିଧାନ ଏବଂ ସମ୍ବିଧାନ। ପ୍ରେମର ଶେଷ ପରିଣତି ହେଉଛି ବିବାହ। ଅର୍ଥାତ୍ ପ୍ରାପ୍ତିରେ ଥାଏ ପରିତୃପ୍ତି। ସାଧାରଣତଃ ପ୍ରେମ ହେଇଥାଏ ଯୁବକ ଯୁବତୀ ବା ପୁରୁଷ ନାରୀ ମଧ୍ୟରେ। କିନ୍ତୁ ଦୁଇଟି ବାଳିକା ମଧ୍ୟରେ ଦେଖା ଦେଇଥିବା ପ୍ରେମ ପରିଶେଷରେ ସେମାନଙ୍କୁ ସ୍ୱାମୀ-ସ୍ତ୍ରୀରେ ପରିଣତ କରିଥିଲା। ଏଥିପାଇଁ ସେମାନଙ୍କୁ କମ୍ କଷ୍ଟ ସହିବାକୁ ପଡ଼ିନି।

ମଂଜୁ ଏବଂ ମଧୁବାଲା ଏକାଶ୍ରେଣୀରେ ପଢୁଥିବା ଦୁଇଟି ଝିଅ। ପିଲା ଦିନରୁ ଉଭୟଙ୍କ ମଧ୍ୟରେ ଗଭୀର ସମ୍ପର୍କ। କେହି କାହାରିକୁ ଦଣ୍ଡେ ଛାଡ଼ିପାରନ୍ତି ନାହିଁ। ଉଭୟଙ୍କ ବିବାହ ଯୋଗ୍ୟ ବୟସ ହୋଇଯାଇଥିବାରୁ ନିଜ ନିଜ ପରିବାର ସେମାନଙ୍କ ପାଇଁ ବରପାତ୍ର ଯୋଗାଡ଼ରେ ରହିଲେ। ଘଟଣାଟି ଉଭୟଙ୍କୁ ଖୁବ୍ ବାଧିଲା। ମଧୁବାଲାର ବାପା ଧର୍ମକର୍ମ ରୀତିନୀତିରେ ଗଭୀର ବିଶ୍ୱାସ କରୁଥିବାରୁ ଭରସି ସେ ବାପାଙ୍କୁ କିଛି କହିପାରିଲା ନାହିଁ। ମାତ୍ର ମଂଜୁର ବାପା ତ୍ରିଲୋକ ଚାନ୍ଦ ଚାୱାଲା ନିଜ କନ୍ୟାକୁ ଖୁବ୍ ଭଲ ପାଉଥିଲେ। ସେ ମଧ୍ୟ ମଂଜୁର ପୁରୁଷୋଚିତ କଣ୍ଠସ୍ୱର, ଚାଲିଚଳଣ ସହିତ ପରିଚିତ ଥିଲେ। ମଂଜୁ ପୁରୁଷ ଭଳି ପୋଷାକ ପତ୍ର ପିନ୍ଧୁଥିଲା ଏବଂ ଡ୍ରାଇଭିଂ ମଧ୍ୟ କରୁଥିଲା। ମଂଜୁ ନିଜର ସେକ୍ସ ପରିବର୍ତ୍ତନ କରି ପୁରୁଷ ହେବାକୁ ଚାହୁଁଥିବା ବିଷୟ ନିଜ ପିତାଙ୍କ ଆଗରେ ପ୍ରକାଶ କରିଥିଲା।

ଲଣ୍ଡନଠାରେ ସଫଳତାର ସହିତ ମଂଜୁର ସେକ୍ସ ପରିବର୍ତ୍ତନ କରାଗଲା। ଏଥିରେ ଖର୍ଚ୍ଚ ହୋଇଥିବା ସତର ହଜାର ଟଙ୍କା ଚାୱାଲା ବଡ଼ କଷ୍ଟରେ ଯୋଗାଡ଼ କରିଥିଲେ। ଏଣିକି ମଂଜୁ ହେଲା ମନୀଷ ଚାୱାଲା ନାମରେ ପରିଚିତ। ୧୯୮୯ ମସିହା ଜାନୁୟାରୀ ୧୪ ତାରିଖରେ ମଂଜୁର ଅପରେସନ କରାଯାଇଥିଲା।

ଫେବୃୟାରୀ ୮ ତାରିଖ ଦିନ ମନୀଷ ମଧୁବାଲାକୁ ବିବାହ କରିଥିଲା ଏବଂ ଉଭୟ ସ୍ୱାମୀ-ସ୍ତ୍ରୀ ଭଳି ରହିଥିଲେ। ଏ ଘଟଣାରେ ଉତ୍କ୍ଷିପ୍ତ ହୋଇ ମଧୁବାଲାର ବାପା ନିଜ ଝିଅକୁ ଜବରଦସ୍ତି ଅପହରଣ କରାଯାଇଛି ବୋଲି ଥାନାରେ ଏତଲା ଦେଇଥିଲେ। ଫେବୃୟାରୀ ୧୬ ତାରିଖ ଦିନ ପୋଲିସ ଘଟଣାର ଅନୁସନ୍ଧାନ ଆରମ୍ଭ କରିଥିଲେ ଏବଂ ମଧୁବାଲାକୁ ୮ ଦିନ ପାଇଁ ପୋଲିସ ହେପାଜତରେ ରହିବାକୁ ହୋଇଥିଲା।

ଦିଲ୍ଲୀ ହାଇକୋର୍ଟରେ ମନୀଷ ଏଥିପାଇଁ ହେଭିଅସ କର୍ପସ ପିଟିସନ ଦାଖଲ କଲାରୁ ହାଇକୋର୍ଟ ଶୁଣାଣିରେ ମନୀଷ ଏବଂ ମଧୁବାଲାର ବିବାହକୁ ଆଇନସିଦ୍ଧ ବୋଲି ଘୋଷଣା କରିଥିଲେ। ସବୁଠାରୁ ଆଶ୍ଚର୍ଯ୍ୟର କଥା ହେଲା, ଆଠଦିନ କାଳ ମଧୁବାଲା ଖାଦ୍ୟଜଳ ଛୁଇଁ ନଥିଲା। ଏହାଦ୍ୱାରା ତାର ପ୍ରେମର ପରାକାଷ୍ଠା ଜଣା ପଡ଼ିଥିଲା। ମଧୁବାଲା ଭଲଭାବେ ଜାଣିଥିଲା ଯେ ସେ କେବେ ସନ୍ତାନ ସମ୍ଭବା ହୋଇପାରିବ ନାହିଁ। ତଥାପି ତା' ମନରେ ଦୁଃଖ ନଥିଲା। କାରଣ ସେ ପତିର ସ୍ନେହ ସୋହାଗରୁ ବଂଚିତ ନଥିଲା। ମଧୁବାଲାକୁ ମନୀଷ ନାରୀ ଜୀବନର ଶ୍ରେଷ୍ଠ ସମ୍ପଦ ସନ୍ତାନ ଦେଇପାରି ନଥିଲେ ମଧ୍ୟ ପ୍ରେମ ଦାନରେ କେବେ ହେଳା କରିନଥିଲା। ଉଭୟଙ୍କର ନିଃସ୍ୱାର୍ଥ ପ୍ରେମ ସେମାନଙ୍କ ଜୀବନକୁ ମଧୁମୟ କରି ଗଢ଼ି ତୋଳିଛି। ଏଥିପାଇଁ ଉଭୟଙ୍କୁ ଅନେକ କିଛି ତ୍ୟାଗ କରିବାକୁ ପଡ଼ିଛି। ପରିସ୍ଥିତି ଏବଂ ପରିବେଶ ସହିତ ସେମାନେ ଖାପଖୁଆଇ ଚାଲିଛନ୍ତି ଗତାନୁଗତିକ ଭାବେ।



# ପାଡେନ-ହୋପକୁକ୍‌ଙ୍କ ପ୍ରେମ କାହାଣୀ (ସିକିମ୍)

ସିକିମ୍ ରାଜବଂଶରେ ଜନ୍ମଗ୍ରହଣ କରିଥିଲା ୧୯୨୩ ମସିହା ମେ ମାସ ୨୩ ତାରିଖ ଦିନ ରାଜା ତାସି ନାମଗ୍ୟାଲ୍‌ଙ୍କର ଦ୍ୱିତୀୟ ପୁତ୍ର ସନ୍ତାନ। ଲାମାମାନେ କୋଷ୍ଠି ଗଣନା କରି ପ୍ରକାଶ କରିଥିଲେ ଯେ ନବଜାତକ ହେଉଛି ଲାମା କର୍ମପାଙ୍କର ଏକ ଅବତାର। ଏ ଘଟଣା ତିବ୍ବତ ଏବଂ ସିକିମ୍‌ରେ ସର୍ବତ୍ର ଖେଳି ଯାଇଥିଲା। ବୌଦ୍ଧ ଧର୍ମାବଲମ୍ବୀମାନେ ଏହି ଶିଶୁ ସନ୍ତାନଟିକୁ ପୂଜା କରିବାକୁ ଲାଗିଲେ। ସିକିମ୍ ରାଜବଂଶର ପ୍ରଚଳିତ ପରମ୍ପରା ଅନୁଯାୟୀ ବଡ଼ ପୁଅ ଯୁବରାଜ ହେଲେ ସାନ ପୁଅ ଧର୍ମକାର୍ଯ୍ୟ କରିବ। ତଦନୁଯାୟୀ ତାସିଙ୍କର ବଡ଼ ପୁଅ ପାକୋର ଯୁବରାଜ ହେଲେ ଏବଂ ପାଡେନ ଦୁଇଟି ବୌଦ୍ଧ ଆଶ୍ରମର ମୁଖ୍ୟ ପଦରେ ଅଭିଷିକ୍ତ ହେଲେ। କିନ୍ତୁ ଭାଗ୍ୟରେଖା ଥିଲା ତାଙ୍କର ବିଚିତ୍ର। ବଡ଼ ଭାଇ ପାକୋର ରୟାଲ ଏୟାର ଫୋର୍ସର ଜଣେ ପାଇଲଟ ଥିଲେ। ୧୯୪୧ରେ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ତାଙ୍କର ମୃତ୍ୟୁ ହେବାରୁ ବାଧ୍ୟ ହୋଇ ପାଡେନ ସମସ୍ତ ଧର୍ମ କାର୍ଯ୍ୟରୁ ଅବ୍ୟାହତି ନେଇ ଫେରିଲେ ଗାଙ୍ଗଟକ୍। ଶାସନ କାର୍ଯ୍ୟରେ ପିତାଙ୍କୁ ସାହାଯ୍ୟ କରିବାକୁ ତାଙ୍କୁ ପଡ଼ିଲା। ଡେରାଡୁନଠାରେ ଥିବା ଆଇ. ସି. ଏସ. ଟ୍ରେନିଂ ସେଣ୍ଟରରେ ସେ ଭର୍ତ୍ତି ହେଲେ। ୨୭ ବର୍ଷ ବୟସରେ ସେ ରାଜକୁମାରୀ ସାଙ୍ଗେଦେଵୀଙ୍କୁ ବିବାହ କଲେ। ଗୋଟିଏ କନ୍ୟା ଏବଂ ଦୁଇଟି ପୁତ୍ର ସନ୍ତାନକୁ ଜନ୍ମ ଦେଇ ୧୯୫୭ରେ ସାଙ୍ଗେ ମୃତ୍ୟୁବରଣ କଲେ। ଏଇଠୁ ଆରମ୍ଭ ଯୁବରାଜ ପାଡେନଙ୍କର ଦୁଃଖପୂର୍ଣ୍ଣ ଜୀବନ। ନିଃସଙ୍ଗ ଜୀବନର ଯନ୍ତ୍ରଣା ତାଙ୍କୁ ବିବ୍ରତ କରି ପକାଇଲା।

> ସାମାନ୍ୟ ପରିଚୟ ପରେ ପରେ ସେମାନେ କଥାବାର୍ତ୍ତା ଭିତରେ ମଜ୍ଜି ଯାଇଥିଲେ। ପାଡେନଙ୍କ ଭିତରୁ କିଛି ସମୟ ପାଇଁ ନିଃସଙ୍ଗତା ଦୂରେଇ ଯାଇଥିଲା। ସେ କ୍ରମଶଃ ଆକର୍ଷିତ ହୋଇ ପଡୁଥିଲେ ଏଇ ବିଦେଶିନୀ ଯୁବତୀଙ୍କ ସମ୍ମୋହନରେ।
>
> ଯୁବରାଜ ପାଡେନ ନ୍ୟୁୟର୍କର ସାରା ଲରେନସ କଲେଜର ଛାତ୍ରୀ ହୋପକୁକ୍‌ଙ୍କ ପ୍ରେମରେ ପୁରାପୁରି ମସ୍‌ଗୁଲ ଥିଲେ। ଅନେକ ରାତ୍ରୀ କଟିଯାଇଛି ଉଭୟଙ୍କର ନାଚ ଆଉ ଗୀତରେ.....।

୧୯୬୦ ମସିହାର କଥା । ପାଡେନ ନିଜ ଦୁଇ ପୁତ୍ରଙ୍କ ସହିତ ଦାର୍ଜିଲିଂର ଏକ ହୋଟେଲରେ ଅବସ୍ଥାନ କରୁଥାନ୍ତି । ଭାରତ ପରିଦର୍ଶନରେ ଆସିଥିବା ଜନୈକା ଆମେରିକାନ ଯୁବତୀ ହୋପକୁକ୍ ଉଇନଚେଷ୍ଟର ମଧ୍ୟ ସେହି ହୋଟେଲରେ ରହୁଥାନ୍ତି । ହୋଟେଲ ଲବିରେ କୌଣସି ଏକ ଅପରାହ୍ଣରେ ବସି ପାଡେନ ଚା' ପାନ କରୁଥାନ୍ତି । ଆକସ୍ମିକ ଭାବେ ଏଇ ଅପରିଚିତା ମାର୍କୀନ ତରୁଣୀ କଣକ ତାଙ୍କ ପାଖକୁ ଆସି ଏକ ଚେୟାର ଟାଣି ବସିଗଲେ । ଭଦ୍ରତା ଦୃଷ୍ଟିରୁ ପାଡେନ ଆଉ କପେ ଚା' ପାଇଁ ଅର୍ଡର ଦେଲେ । ସାମାନ୍ୟ ପରିଚୟ ପରେ ପରେ ସେମାନେ କଥାବାର୍ତ୍ତା ଭିତରେ ମଜ୍ଜି ଯାଇଥିଲେ । ପାଡେନଙ୍କ ଭିତରୁ କିଛି ସମୟ ପାଇଁ ନିଃସଙ୍ଗତା ଦୂରେଇ ଯାଇଥିଲା । ସେ କ୍ରମଶଃ ଆକର୍ଷିତ ହୋଇ ପଡୁଥିଲେ ଏଇ ବିଦେଶିନୀ ଯୁବତୀଙ୍କ ସମ୍ମୋହନରେ ।

ଯୁବରାଜ ପାଡେନ ନ୍ୟୁୟର୍କର ସାରା ଲରେନସ କଲେଜର ଛାତ୍ରୀ ହୋପକୁକ୍‌ଙ୍କ ପ୍ରେମରେ ପୁରାପୁରି ମସ୍‌ଗୁଲ ଥିଲେ । ଅନେକ ରାତ୍ରୀ କଟିଯାଇଛି ଉଭୟଙ୍କର ନାଚ ଆଉ ଗୀତରେ । ଛୁଟି ପାଇଯିବା ପରେ ମାର୍କୀନ ଯୁବତୀ କଣକ ଫେରି ଯାଇଥିଲେ ଆମେରିକା । ତା' ପରବର୍ଷ ଛୁଟିରେ ମଧ୍ୟ ହୋପକୁକ୍ ସେଇ ହୋଟେଲକୁ ଆସି ଅବକାଶ କଟାଇଥିଲେ । ପୁଣି ସାକ୍ଷାତ ଏବଂ ଆଳାପ ହୋଇଥିଲା ଉଭୟଙ୍କର । ଗୋଟିଏ ବର୍ଷ ପରେ ଅର୍ଥାତ୍ ୧୯୬୨ରେ ଯୁବରାଜ ହୋପକୁକ୍‌ଙ୍କୁ ବିବାହ ପ୍ରସ୍ତାବ ଦେଲେ । ମାର୍କୀନ ସୁନ୍ଦରୀଙ୍କ ପକ୍ଷରୁ ନାସ୍ତିବାଣୀର ପ୍ରଶ୍ନ ଉଠୁନଥିଲା । ମାତ୍ର ଏହାର ଘୋର ବିରୋଧ କରିଥିଲେ ସିକିମ୍ ରାଜା ତାସି । ପୁତ୍ରର କଣେ ଖ୍ରୀଷ୍ଟିୟାନ ଯୁବତୀ ସହ ବିବାହ ପ୍ରସ୍ତାବରେ ସେ ମର୍ମାହତ ହୋଇଥିଲେ । ସିକିମ୍ ବୌଦ୍ଧଧର୍ମାବଲମ୍ବୀ ଜନସାଧାରଣ, ଲାମାମାନେ ଏହାକୁ ମଧ୍ୟ ପ୍ରତିରୋଧ କରିଥିଲେ । କିନ୍ତୁ ପରିଶେଷରେ ପ୍ରେମ ହିଁ ଜିତିଲା ।

ବାଧ୍ୟ ହୋଇ ଧର୍ମଗୁରୁମାନେ ବିବାହର ତାରିଖ ନିର୍ଦ୍ଦିଷ୍ଟ କଲେ । ଯୁବରାଜ ହୋପକୁକ୍‌ଙ୍କ ସହିତ ଆମେରିକା ଗଲେ ବିବାହ ଅଳଙ୍କାର କିଣିବା ପାଇଁ । ଗାଙ୍ଗଟକ ରାଜଦରବାରରେ ମହା ଆଡ଼ମ୍ବରରେ ପାଡେନ ଏବଂ ହୋପକୁକ୍‌ଙ୍କର ବିବାହ ସମାପନ ହୋଇଥିଲା । ଯୁବରାଣୀଙ୍କୁ ବୌଦ୍ଧ ଧର୍ମ ଗୁରୁଗଣ ଉପଦେଶବାଣୀ ଶୁଣାଇଲେ । ସିକିମ୍‌ର ପାରମ୍ପରିକ ଡ୍ରେସ୍ ପିନ୍ଧି ହୋପକୁକ୍ ବୌଦ୍ଧଧର୍ମର ରୀତିରେ

ବିବାହ କରିଥିଲେ। ତାଙ୍କର ନାମ ମଧ୍ୟ ପରିବର୍ତ୍ତନ କରାଯାଇ ରଖାଗଲା 'ଗ୍ୟାଲମୋ'। ଏ ବିବାହ ରାଜପରିବାର କିମ୍ବା ରାଜ୍ୟର ଜନସାଧାରଣ କେହି ସୁଖୀ ନଥିଲେ। ତାସୀଙ୍କ ମୃତ୍ୟୁ ପରେ ପାଡେନ ୧୯୬୫ରେ ସିଂହାସନ ଆରୋହଣ କଲେ। ରାଜଗୁରୁ ପାଡେନଙ୍କୁ ଯେତେ ରାଜକୀୟ ଉପଦେଶ ଦେଲେ ମଧ୍ୟ ସେ ସବୁର କୌଣସି ମୂଲ୍ୟ ରହୁନଥିଲା। କାରଣ ରାଜା ସବୁବେଳେ ରାଣୀଙ୍କ ପ୍ରେମରେ ଅନ୍ଧ ଥିଲେ। ଶାସନ ବ୍ୟବସ୍ଥାରେ ସେ ଆଦୌ ମୁଣ୍ଡ ଖେଳାଉ ନଥିଲେ। ପ୍ରତି ମୁହୂର୍ତ୍ତରେ ପାଡେନ ରାଣୀଙ୍କର ମତାମତ ଅପେକ୍ଷାରେ ରହୁଥିଲେ। ହୋପକୁକ୍ ମଧ୍ୟ ମନଇଛା ଶାସନର ଅପବ୍ୟବହାର କରୁଥିଲେ।

ହୋପକୁକ୍‌ଙ୍କର ସି. ଆଇ. ଏ. ସହିତ ଗୁପ୍ତ ବୁଝାମଣା ଥିଲା। ଆମେରିକାର କେତେକଣ ସାମ୍ବାଦିକଙ୍କ କରିଆରେ ସେ ସିକିମ୍‌କୁ ଏକ ସାର୍ବଭୌମ ରାଷ୍ଟ୍ରରେ ପରିଣତ କରିବା ପାଇଁ ଜାତିସଙ୍ଘର ଦୃଷ୍ଟି ଆକର୍ଷଣ କରିଲେ। ହୋପକୁକ୍ ଏକ ବ୍ୟବସାୟିକ ପ୍ରତିଷ୍ଠାନ କରି ସିକିମ୍‌ର ହସ୍ତଶିଳ୍ପ ଦ୍ରବ୍ୟ ବାହାରକୁ ଚାଲାଣ କରିବାକୁ ଲାଗିଲେ। ଆର୍ଥନୀତିକ କାର୍ଯ୍ୟକ୍ରମ ମାଧ୍ୟମରେ ହୋପକୁକ୍ ବାହାର ଦୁନିଆ ସହିତ ଗୁପ୍ତ ସମ୍ପର୍କ ପ୍ରତିଷ୍ଠା କରିଥିଲେ। ସିକିମ୍‌କୁ ଏକ ସ୍ୱାଧୀନ ରାଷ୍ଟ୍ରରେ ପରିଣତ କରିବା ପାଇଁ ହୋପକୁକ୍ ଏକ ପ୍ରକାର ସ୍ୱାମୀଙ୍କୁ ପ୍ରବର୍ତ୍ତାଇବାରେ ଲାଗିଲେ। ଚୀନରୁ ସିକିମ୍ ବାଟ ଦେଇ ଭାରତକୁ ବହୁ ଅନୁପ୍ରବେଶକାରୀ ଆସୁଥିବାରୁ ଭାରତ ସରକାର ଏଠାରେ ଏକ ପ୍ରତିବନ୍ଧକ ଲଗାଇଲେ। ମାତ୍ର ହୋପକୁକ୍ ଚାହୁଁଥିଲେ ସିକିମ ନିଜର ଆଇନ ନିଜେ ପ୍ରଣୟନ କରୁ। ତେଣୁ ସେ ପାଡ଼େନଙ୍କୁ ଆମେରିକାର ସହାୟତା ନେବା ପାଇଁ ପ୍ରସ୍ତାବ ଦେଲେ। ଭାରତ ସରକାରଙ୍କ ସହିତ ସମ୍ପର୍କ ଛିନ୍ନ କରିବା ପାଇଁ ପ୍ରବର୍ତ୍ତାଇଲେ। ୧୯୫୦ ଭାରତ-ସିକିମ ରାଜିନାମାର ଖିଲାପ ହେବାରୁ ସିକିମ ଜନସାଧାରଣ ଏହାର ବିରୋଧ କଲେ। ୧୯୭୫ ମସିହାରେ ସିକିମ ବିଧାନସଭାରେ ପାଡ଼େନଙ୍କୁ ବହିଷ୍କାର କରାଯାଇ ଭାରତ ସରକାରଙ୍କ ସହ ମିଶ୍ରଣ ପାଇଁ ଏକ ପ୍ରସ୍ତାବ ବହୁ ଭୋଟରେ ଗୃହୀତ ହୋଇଗଲା।

ସବୁଦିନ ପାଇଁ ରାଜା ପାଡ଼େନ ନିଜ ଅଧିକାରରୁ ବଞ୍ଚିତ ହେଲେ। ଏଥର ତାଙ୍କ ପାଇଁ ଦୁର୍ଦ୍ଦିନ ଆଗେଇ ଆସିଲା।

ହୋପକୁକ୍ ନିକର ପ୍ରଚେଷ୍ଟାରେ ବିଫଳ ହୋଇଥିବାରୁ ଆମେରିକୀୟ ସାହାଯ୍ୟ ମଧ୍ୟ ବନ୍ଦ ହୋଇଗଲା । ରାଣୀ କଥାକଥାକେ ରାଜାଙ୍କ ଉପରେ ବିରକ୍ତି ପ୍ରକାଶ କଲେ । ନିଜର ଦୁଇଟି ସନ୍ତାନ ସହ ହୋପକୁକ୍ ନିୟୁୟର୍କ ଫେରିଗଲେ । ସିକିମରେ ପଡ଼ିରହିଲେ ଅସହାୟ ଅବସ୍ଥାରେ ରାଜା ପାଡେନ । ଶେଷରେ ହୋପକୁକ୍ ମଧ୍ୟ ପାଡେନଙ୍କୁ ଡାଇଭର୍ସ କରିବାକୁ ବାଧ୍ୟ ହୋଇଥିଲେ । ସେ ଭଲଭାବେ ଜାଣିଥିଲେ, ପାଡେନ ଏଣିକି ତାଙ୍କ ପାଇଁ ଏକ ଅଦରକାରୀ ଦ୍ରବ୍ୟରେ ପରିଣତ ହୋଇଯାଇଛନ୍ତି । ଦୁଃଖ ଏବଂ ମାନସିକ ଯନ୍ତ୍ରଣା ମଧ୍ୟରେ ପାଡେନ କ୍ୟାନସର ରୋଗରେ ଆକ୍ରାନ୍ତ ହେଲେ । ୧୯୮୧ରେ ତାଙ୍କୁ ଆମେରିକାର ଏକ ଡାକ୍ତରଖାନାରେ ଭର୍ତ୍ତି କରାଗଲା । ୧୯୮୨ ମସିହା ଜାନୁୟାରୀ ୩୦ ତାରିଖରେ ସେ ମୃତ୍ୟୁବରଣ କଲେ । ମୃତ୍ୟୁ ସମ୍ବାଦ ପାଇବା କ୍ଷଣି ତାଙ୍କ ପାଖରେ ନିଜର ଦୁଇ ସନ୍ତାନଙ୍କ ସହ ସେଠାରେ ପହଞ୍ଚିଥିଲେ ହୋପକୁକ୍ । ଏହି ସନ୍ତାନ ଦୁଇଜଣ ନିଜ ପିତାଙ୍କର ଶବକୁ ଗାଙ୍ଗଟକ ଆଣିଥିଲେ । ସେଠାରେ ପାଡେନଙ୍କ ପ୍ରଥମ ପତ୍ନୀଙ୍କର ପୁତ୍ର ପିତାଙ୍କର ମର ଶରୀରକୁ ଗ୍ରହଣ କରିଥିଲେ ।

ହୋପକୁକ୍‌ଙ୍କ ମନରେ ଦୁଃଖ ନଥିଲା । କାରଣ ନିଜ ପାଇଁ ସେ ସିକିମ୍‌ରୁ ଯଥେଷ୍ଟ ଧନ ସମ୍ପତ୍ତି ଠୁଳ କରି ପାରିଥିଲେ ନିୟୁୟର୍କରେ । ଆମେରିକାର ବ୍ୟାଙ୍କରେ ଗଚ୍ଛିତ ଥିବା ଅର୍ଥ ଏବଂ ଆନ୍ତର୍ଜାତିକ ବ୍ୟବସାୟରୁ ମିଳୁଥିବା ପ୍ରଚୁର ଲାଭ ତାଙ୍କୁ ଆଜି ବି ଏକ ବିତ୍ତଶାଳୀ ରାଣୀର ସମ୍ମାନ ଦେଇଛି । ତାଙ୍କର ଚଳଣିରେ ଏବେ ବି ରାଜକୀୟ ଠାଣି ରହିଛି । ରାଣୀ ନ ହୋଇ ମଧ୍ୟ ସେ ରାଣୀ ।



# ଧର୍ମ ନାମରେ ପ୍ରେମ

କୃଷ୍ଣଙ୍କ ବିଚିତ୍ର ପ୍ରେମ କାହାଣୀକୁ ଧର୍ମଗ୍ରନ୍ଥ ଗୁଡ଼ିକ ଐଶ୍ୱରିକ ଲୀଳା ଭାବେ ବର୍ଣ୍ଣନା କରିଛି। ଋଷି ବିଶ୍ୱାମିତ୍ରଙ୍କ ପ୍ରେମ କାହାଣୀ କାହାକୁ ଅଜଣା ? ହିନ୍ଦୁ ପୁରାଣ ଶାସ୍ତ୍ରରେ ଏଭଳି ବହୁ ବିଚିତ୍ର ପ୍ରେମ କାହାଣୀ ରହିଛି। ସବୁଠୁ ମଜାକଥା ହେଲା, ଆମେରିକାରେ ଧର୍ମକୁ ଆଜ କରି ଗଡ଼ିଉଠିଥିଲା ବିଚିତ୍ର ପ୍ରେମ ପୁରାଣ। ଊନବିଂଶ ଶତାବ୍ଦୀର ପ୍ରାରମ୍ଭିକ ଭାଗରେ ଏକ ବିଚିତ୍ର ପରମ୍ପରା ଆମେରିକାରେ ଦେଖିବାକୁ ମିଳିଲା। ଏକ ମିଳିତ ଶିବିରରେ ଉଭୟ ପୁରୁଷ ଏବଂ ନାରୀ ଧର୍ମାଚରଣ କରିବାକୁ ସମବେତ ହୋଇଥିଲେ। ଧର୍ମାଚରଣ କ୍ରମେ କାମନାର କସରତରେ ପରିଣତ ହେଲା। ଏହି ଶିବିରମାନଙ୍କରେ ବହୁ ଭିଡ଼ ଜମିଲା। ଏପ୍ରକାର ବିଚିତ୍ର ଧର୍ମ ପ୍ରବୃତ୍ତିକୁ ଆମେରିକାବାସୀ ଭଲ ମନରେ ଗ୍ରହଣ କରିନେଇଥିଲେ। କାରଣ ଏହା ପଛରେ ସେଠାକାର ବିଶିଷ୍ଟ ଧର୍ମ ପ୍ରଚାରକ, ଧର୍ମଯାଜକମାନଙ୍କର ଆଶୀର୍ବାଦ ରହିଥିଲା। ବହୁ ଯୁବକ ଯୁବତୀ ମୁକ୍ତ ଭାବରେ ଈଶ୍ୱରଙ୍କ ଆରାଧନା କରିବା ପାଇଁ ଏହି ଶିବିରମାନଙ୍କୁ ଆସୁଥିଲେ। ସେମାନଙ୍କ ଭିତରେ ଆଧ୍ୟାତ୍ମିକ ଭାବ ଉଭେଇଯାଇ କାମନାର ଭୂତ ସବାର ହୋଇଥିଲା। ନଅମାସ ପରେ କ୍ୟାମ୍ପ ଉଠିଥିଲା, ଈଶ୍ୱରଙ୍କ କରୁଣା ନମିଳୁ ପଛେ କିଛି ଅବାଞ୍ଛିତ ଶିଶୁ ଧରଣୀର ଶୁଭ୍ର ସୂର୍ଯ୍ୟାଲୋକ ଦେଖିବା ପୂର୍ବରୁ ଆଖି ବୁଜିଥିଲେ।

> ପ୍ରେମ ଏଭଳି ଏକ ପ୍ରବୃତ୍ତି, ଯେଉଁଥିରୁ ଉଚ୍ଚ ପଦାଧିକାରୀଙ୍କଠାରୁ ଆରମ୍ଭ କରି ଈଶ୍ୱରଙ୍କ ଭକ୍ତ ବା ସେମାନଙ୍କ ପର୍ଯ୍ୟନ୍ତ କେହି ଉଦ୍ଧାର ପାଇନାହାନ୍ତି। ଧର୍ମ ନାମରେ ପ୍ରେମର ତାଣ୍ଡବଲୀଳା ସୃଷ୍ଟି ହୋଇଛି। ସେଥିକୁ ନେଇ କସରତ୍ ହୋଇଛି। ଈଶ୍ୱରଙ୍କ ନାମରେ ତାଙ୍କ ପାଖ ଲୋକମାନେ ଅନେକ ନାରକୀୟ କାଣ୍ଡ ଘଟାଇଛନ୍ତି। ସାଧାରଣ ଜନତା ଏ ସବୁକୁ ଈଶ୍ୱରଙ୍କ ଆଶୀର୍ବାଦ ବୋଲି ଧରିନେଇଛନ୍ତି। ପ୍ରେମର ଏହି ଯନ୍ତାରୁ ମୁନିଋଷିଙ୍କଠାରୁ ଆରମ୍ଭ କରି ଦେବତାମାନଙ୍କ ପର୍ଯ୍ୟନ୍ତ କେହି ରକ୍ଷା ପାଇପାରି ନାହାନ୍ତି।

ଆମେରିକାର ଗୃହଯୁଦ୍ଧ ସମୟର ଘଟଣା । ସେତେବେଳେ ଆମେରିକାରେ ଜଣେ ପ୍ରତିଭାଶାଳୀ ମନ୍ତ୍ରୀ ଭାବରେ ହେନେରୀବାର୍ଡ ବିଚର ଭଲଭାବେ ଜଣାଶୁଣା । ସେ ଜଣେ ବିଶିଷ୍ଟ ଧର୍ମପ୍ରଚାରକ ଏବଂ ସୁବକ୍ତା । ତାଙ୍କ ଭାଷଣ ଶୁଣିବା ପାଇଁ ବ୍ରୁକ୍‌ଲିନ୍‌ର ଚର୍ଚ୍ଚରେ ଲୋକଙ୍କର ଲାଇନ ଲାଗୁଥିଲା । ନିଉୟର୍କରେ ବିଚର ମଧ୍ୟ ତାଙ୍କ ବକ୍ତୃତାମାଳାରୁ ମୋଟା ଧରଣର ଅର୍ଥ ଉପାର୍ଜନ କରିପାରୁଥିଲେ । ୧୮୬୪ରେ ଏକ ମଜାଦାର ଘଟଣା ଘଟିଲା । ବିଚର ନିଜର ବନ୍ଧୁ ଥେଡ଼ର ଟିଟନଙ୍କ ପତ୍ନୀଙ୍କୁ ବଳାତ୍କାର କରିଥିଲେ । ଘଟଣାଟି କୋର୍ଟର ପରିସରକୁ ଗଲା । ରାୟ ଶୁଣିବା ପାଇଁ ଏଭଳି ଭିଡ଼ ଜମିଲା, ବାଧ୍ୟହୋଇ କୋର୍ଟ କର୍ତ୍ତୃପକ୍ଷ ଟିକେଟ ବିକ୍ରିର ଆଶ୍ରୟ ନେଲେ । ବିଚର ନିଜ ଯୁକ୍ତିରେ ଦୃଢ଼ କହିଲେ । ଅବଶ୍ୟ କୋର୍ଟ ତାଙ୍କୁ ଅଭିଯୋଗରୁ ମୁକ୍ତ କରିଥିଲେ । ରାୟ ଶୁଣିବା ପରେ ପରେ, ବିଚର ନିଜ ଆସନରୁ ଉଠି ବନ୍ଧୁପତ୍ନୀଙ୍କ ପାଖକୁ ଦୌଡ଼ିଆସି କରମର୍ଦ୍ଦନ କରିଥିଲେ । ବିଚରଙ୍କ କ୍ଷମତା ବେଶ୍ ପ୍ରଭାବଶାଳୀ ଥିଲା । ଏଭଳି ଘଟଣା ପରେ ମଧ୍ୟ ଦୀର୍ଘ ତେରବର୍ଷ ଅର୍ଥାତ୍ ମୃତ୍ୟୁ ପର୍ଯ୍ୟନ୍ତ ବିଚରଙ୍କ ଲୋକପ୍ରିୟତା ବଳବତ୍ତର ରହିଥିଲା ।

ଏଭଳି ଆଉ ଏକ ଚମକପ୍ରଦ ଘଟଣା ଘଟିଥିଲା ୧୯୨୬ ମସିହାରେ । ଲସ୍‌ଏଞ୍ଜେଲସ୍‌ର ଚର୍ଚ୍ଚରେ ଆମି ସେମ୍ପିଲନ ମ୍ୟାକ୍‌ଫର୍ସନ ଏକ ଜଣାଶୁଣା ନାମ । ଏହି ମହିଳା ପ୍ରଚାରକଙ୍କର ଯଥେଷ୍ଟ ସଂଖ୍ୟକ ଭକ୍ତ ଥିଲେ । ସେମାନେ ସମସ୍ତେ ତାଙ୍କୁ ଭକ୍ତି ଏବଂ ଶ୍ରଦ୍ଧା କରୁଥିଲେ । ୧୯୨୬ ମେ ମାସରେ ଏକ ଅପରାହ୍ନରେ ଆମି ସୁଇମିଙ୍ଗ୍ କରିବାକୁ ଯାଇ ହଠାତ୍ ଅନ୍ତର୍ଦ୍ଧାନ ହୋଇଗଲେ । ୩୬ ଦିନ ପରେ ତାଙ୍କର ସନ୍ଧାନ ମିଳିଲା । ମେକ୍ସିକୋ ଉପକୂଳରୁ ଅପହୃତା ହୋଇଥିଲେ ବୋଲି ସେ ସର୍ବସାଧାରଣରେ ପ୍ରକାଶ କରିଥିଲେ । ମାତ୍ର ପୋଲିସ ଅନୁସନ୍ଧାନରୁ ଜଣା ପଡ଼ିଲା ଆମି ତାଙ୍କ ପ୍ରେମିକଙ୍କ ସହିତ ଏହି ୩୬ ଦିନ ଏକ ସନ୍ୟାସୀ ସଦନରେ କଟାଇଥିଲେ । ପ୍ରକାଶ ଥାଉକି ଆମିଙ୍କ ଏହି ପ୍ରେମିକ ଜଣଙ୍କ ହେଉଛନ୍ତି ଜଣେ ବିବାହିତ ବ୍ୟକ୍ତି । ଆମି ଜନମାନସକୁ ବିଭ୍ରାନ୍ତ କରିଥିବାର ଅଭିଯୋଗ ଆଣିଥିଲା ପୋଲିସ । ମାତ୍ର ଆମିଙ୍କର ବଶମ୍ବଦ ଗ୍ରାହକ ଭକ୍ତଗଣ ତାଙ୍କଠାରେ କୌଣସି ପ୍ରକାର ଅନୈତିକ ମୋହର ମାରିବାକୁ ଦେଇ ନଥିଲେ । ତେଣୁ ପୋଲିସ କେଶ୍‌ଟି ଅକାମି ହୋଇପଡ଼ିବାକୁ ବାଧ୍ୟ ହୋଇଥିଲା । କୋର୍ଟ ତାଙ୍କୁ ଅଭିଯୋଗମୁକ୍ତ

କରିଥିଲେ। ଭକ୍ତଗଣ ତାଙ୍କୁ ଆଦରର ସହିତ ଗ୍ରହଣ କରିନେଇଥିଲେ। ମୃତ୍ୟୁ ପର୍ଯ୍ୟନ୍ତ ଆମି ଚର୍ଚ୍ଚରେ ନିଜର ପ୍ରଭାବକୁ ଅତୁଟ ରଖି ପାରିଥିଲେ। ଅତ୍ୟଧିକ ପରିମାଣର ଯୌନଉଦ୍ଦୀପକ ଔଷଧ ଖାଇ ଆମି ୫୩ ବର୍ଷରେ ମୃତ୍ୟୁବରଣ କରିଥିଲେ।

ପ୍ରେମର ଫାଶରେ ବନ୍ଦୀ ହୋଇଥିଲେ ଆଉଜଣେ ଖ୍ରୀଷ୍ଟଧର୍ମଯାଜକ ଟେରୀନେଟର। ଖ୍ରୀଷ୍ଟଧର୍ମ ବିଷୟରେ ଜର୍ଜଟାଉନର ସେ ଜଣେ ପ୍ରବୀଣ ପ୍ରଫେସର ଥିଲେ। ଏସବୁ ଛଡ଼ା ସେ ମଧ୍ୟ ଚର୍ଚ୍ଚର ପୁରୋହିତ ଥିଲେ। ବିଶ୍ୱବିଦ୍ୟାଳୟରେ ଟେରୀନେଟର ଥେରେସୀ ଫ୍ରାଞ୍ଜେସୀ ନାମକ ଜଣେ ସୁନ୍ଦରୀ ଛାତ୍ରୀର ପ୍ରେମରେ ପଡ଼ିଗଲେ। ଅବସ୍ଥା ଏପରି ହେଲା ଯେ କେହି କାହାରିଠାରୁ ଅଲଗା ରହିପାରିଲେ ନାହିଁ। ବିବାହ ସେମାନଙ୍କ ପାଇଁ ଏକମାତ୍ର ବନ୍ଧନ ବୋଲି ସେମାନେ ଅନୁଭବ କଲେ। ଫାଦର୍ ଟେରୀନେଟର ଏହି ସୁନ୍ଦରୀ ଜଣକୁ ବିବାହ କରିବା ପାଇଁ ଏବଂ ତତ୍ ସଙ୍ଗେ ସଙ୍ଗେ ନିଜର ପୁରୋହିତଗିରି ବଜାୟ ରଖିବା ପାଇଁ ପୋପ୍‌ଙ୍କୁ ଅନୁମତି ମାଗିଲେ। ୬ ମାସ ବିତିଗଲା। କୌଣସି ଉତ୍ତର ପୋପ୍‌ଙ୍କଠାରୁ ମିଳିଲା ନାହିଁ। କାଳ ବିଳମ୍ବ ନକରି ଟେରୀନେଟର ଏବଂ ଥେରେସୀ ବିବାହ କଲେ। ସେତେବେଳକାର ଚର୍ଚ୍ଚର ନିୟମ ଅନୁଯାୟୀ ଜଣେ ବିବାହିତ ବ୍ୟକ୍ତି ଚର୍ଚ୍ଚର ପୁରୋହିତ ରହିପାରିବେ ନାହିଁ। ବାଧ୍ୟହୋଇ ଟେରୀନେଟର ଚର୍ଚ୍ଚର ପୁରୋହିତଗିରି ଛାଡ଼ିଲେ।

ନିଜର ସାଧୁତାକୁ ପ୍ରମାଣିତ କରକିବା ପାଇଁ ଟେରୀନେଟର ଖୋଲାଖୋଲି ଭାବେ ବିବାହ କରିବାକୁ ଆଗେଇ ଆସିଥିଲେ। ଥେରେସୀଙ୍କୁ ବିବାହ କରିବାଦ୍ୱାରା ସେ ଏକ ମହତ କାମ କରିପାରିଥିଲେ ବୋଲି ଅନୁଭବ କଲେ। ବିବାହ ପରେ ପରେ ତାଙ୍କୁ ଆର୍ଥିକ ସଂକଟର ସମ୍ମୁଖୀନ ହେବାକୁ ପଡ଼ିଥିଲା। ତଥାପି ସେ ଭାଙ୍ଗିପଡ଼ି ନଥିଲେ। ନେଟର ନିଜ ତିଆରି ପେଣ୍ଟିଙ୍ଗ୍‌ସର ସୋ'ମାନ କରି କିଛି ପଇସା ପାଇଲେ। ଥେରେସୀ ମେଟ୍ରୋପଲିଟାନ ଅପେରାର ରୁଡ଼ଲଫ ବିଂଗ୍‌ଙ୍କର ସେକ୍ରେଟାରୀ ଭାବେ ନିଯୁକ୍ତି ପାଇବାରୁ ଆର୍ଥିକ ସମସ୍ୟାର କିଛିଟା ସମାଧାନ ହୋଇଯାଇଥିଲା। ଟେରୀନେଟରଙ୍କ ଜୀବନର ସବୁଠାରୁ ଯନ୍ତ୍ରଣାଦାୟକ

ଅନୁଭୂତି ଥିଲା, ଯେତେବେଳେ ଲୋକେ ତାଙ୍କୁ 'ଫାଦର' ବଦଳରେ 'ମିଷ୍ଟର' ବୋଲି ସମ୍ବୋଧନ କରୁଥିଲେ।

ଖ୍ରୀଷ୍ଟଧର୍ମ ସମ୍ପ୍ରଦାୟରେ ବିବାହ ଏବଂ ପୁରୋହିତଗିରି ଏକ ସାଥିରେ କାମ କରିବା ଅସମ୍ଭବ ଥିଲା। ଟେରୀନେଟରଙ୍କ ବିବାହ ପରେ ପରେ ବହୁ କାଥୋଲିକ ଧର୍ମଯାଜକ ବିବାହ କରିବାକୁ ମନ ବଳାଇଲେ। ଏହା ପୁରା ଏକ ନୂଆ ପରମ୍ପରା ସୃଷ୍ଟି କଲା। ବିବାହିତ ଧର୍ମଯାଜକଙ୍କୁ ଧର୍ମଯାଜକ ରୂପେ ମାନିନେବା ବିଷୟ ନେଇ ଏକ ଝଡ଼ ସୃଷ୍ଟି ହେଲା। ଏମିତି ଏକ ଦମ୍ପତି ହେଉଛନ୍ତି ମାଇକେଲ ଏବଂ ଆନ୍। ମାଇକେଲଙ୍କ ପିତା ରାଇଟ୍ ରିଭରେଣ୍ଡ ଜନ୍ ବି. ଜବର୍ଣ୍ଣ ଥିଲେ ମାସାଚୁସେଟ୍ସ ଏପିସ୍କୋପାଲ ଚର୍ଚ୍ଚର ବିଶପ୍। ମାଇକେଲ ଏବଂ ଆନ୍ ପୁରୋହିତଗିରି ବିଷୟରେ ପଢ଼ିବା ପୂର୍ବରୁ ବିବାହ କରିଥିଲେ ଏବଂ ପରେ ତିନିବର୍ଷ କାଳ ଧର୍ମତାତ୍ତ୍ୱିକ ତାଲିମ ଉଭୟ ଏକା ସାଙ୍ଗରେ ଗ୍ରହଣ କରିଥିଲେ। ୧୯୭୭ ମସିହା ଡିସେମ୍ବର ୧୭ ତାରିଖ ଦିନ ଉଭୟ ବିଶପଙ୍କ ସମ୍ମୁଖରେ ପୁରୋହିତ କର୍ମ ପାଇଁ ନିଜକୁ ଉତ୍ସର୍ଗ କରିଥିଲେ। ଏଥିପାଇଁ ବିଶପ ଯେତେବେଳେ ଚର୍ଚ୍ଚରେ ଉପସ୍ଥିତ ଜନତାଙ୍କ ମତାମତ ଜାଣିବାକୁ ଚାହିଁଲେ, ଆନନ୍ଦର ସହିତ ସମବେତ ଜନତା ଏହାକୁ ସ୍ୱାଗତ କରିଥିଲେ। ମାଇକେଲ ଏବଂ ଆନ୍ ଥିଲେ ପ୍ରଥମ ବିବାହିତ ଧର୍ମଯାଜକ ଦମ୍ପତି।



# ପ୍ରେମର ତାପସୀ ସୁକନ୍ୟା (ଭାରତ)

ସେଦିନ ଲଣ୍ଡନର ଓଡେନ୍ ହଲରେ ପ୍ରବଳ ଭିଡ଼। ଶ୍ୱେତକାୟ ଏବଂ କୃଷ୍ଣକାୟମାନଙ୍କର ଅପୂର୍ବ ସମାବେଶ। ବିଶିଷ୍ଟ ସୀତାର ବାଦକ ପଣ୍ଡିତ ରବିଶଙ୍କର ଯନ୍ତ୍ରସଙ୍ଗୀତ ପରିବେଷଣ କରୁଥାନ୍ତି। ଅର୍କେଷ୍ଟ୍ରା ଶେଷହେଲା। ଜନାକୀର୍ଣ୍ଣ ଓଡେନ୍ ହଲ୍ ଧୀରେ ଧୀରେ ଜନଶୂନ୍ୟ ହେବାକୁ ଲାଗିଲା। ଦର୍ଶକଗଣ ଯେ ଯାହା ବାଟରେ ଚାଲିଗଲେ। ମାତ୍ର ବସି ରହିଥିଲେ ଜଣେ ତରୁଣୀ। ସେ ଏକଲୟରେ ଚାହିଁ ରହିଥାନ୍ତି ପଣ୍ଡିତ ରବିଶଙ୍କରଙ୍କୁ। ହଲ୍‌ର ବଏ ତାଙ୍କୁ ଚେତେଇ ଦେବାରୁ ତରୁଣୀ ଜଣକ ବାସ୍ତବ ଦୁନିଆ ଭିତରକୁ ଫେରି ଆସିଥିଲେ ଏବଂ ହଲ୍‌ରୁ ବାହାରି ଆସିଥିଲେ। ଏଇ ତରୁଣୀ ଜଣକ ଥିଲେ କଳାର ପୂଜାରିଣୀ ସୁକନ୍ୟା। ଭକ୍ତ ମୀରା

> କଳାରେ ସବୁ କିଛି ସମ୍ଭବ ହୁଏ। କଳା ମାନେ ନାହିଁ ସ୍ଥାନ-କାଳ-ପାତ୍ର, ବୟସ ଏବଂ ବର୍ଣ୍ଣ। କଳାକାରର ହୃଦୟ ତନ୍ତ୍ରୀରେ ଥରେ ଅନ୍ୟ ପାଇଁ ଝଙ୍କାର ସୃଷ୍ଟି ହେଲେ, ତାହା ବେଶ୍ ତରଙ୍ଗାୟିତ ହୋଇଉଠେ। ନଦୀ ସାଗରର ମିଳନକୁ ପ୍ରତୀକ୍ଷା କଲା ପରି ବିରହୀ କଳାକାର ଇପ୍ସିତ ବସ୍ତୁର ଆଶାରେ ରାତିରାତି ଉଜାଗରରେ କଟାଇଦିଏ। କ୍ଷେତ୍ର ବିଶେଷରେ ପ୍ରାପ୍ତିର ଆନନ୍ଦ ତା' ଭିତରେ ଏକ ନୂଆ ଇମାରତ୍ ସୃଷ୍ଟି କରେ। ଆଗେଇ ଯିବା ପାଇଁ ପ୍ରେରଣା ଯୋଗାଏ। ପୁଣି ଅପ୍ରାପ୍ତିର ଅନୁଶୋଚନା କଳାକାରକୁ ଦାଣ୍ଡର ଭିକାରୀ ସଜାଏ। ମୃତ୍ୟୁ ମୁହଁକୁ ମଧ୍ୟ ଠେଲିଦିଏ। କଳାର ଆନନ୍ଦ, ଏକ ପବିତ୍ରତା ଉପରେ ଆଧାରଣୀଳ। ହୃଦୟ ସହିତ କଳାକାର ହୃଦୟର ସଂଘର୍ଷ ତା' ବୀଣାର ତନ୍ତ୍ରୀରେ ସ୍ୱର ସୃଷ୍ଟି କରେ। ଏଇ ତନ୍ତ୍ରୀରେ ଏକ ଅନାହତ ସ୍ୱର ହେଉଛନ୍ତି 'ସୁକନ୍ୟା'। ସାଧିକା, ତାପସୀ, ପତ୍ନୀ, ପ୍ରେମିକା ସବୁକିଛି .......।

ଯେମିତି ନିଜର ଶ୍ରଦ୍ଧା ଭକ୍ତି ବଳରେ କୃଷ୍ଣଙ୍କୁ ନିଜର କରିପାରିଥିଲେ, ସେହିପରି ସୁକନ୍ୟା ମଧ୍ୟ ସାଧନା ଏବଂ ନିଷ୍ଠା ବଳରେ ପଣ୍ଡିତ ରବିଶଙ୍କରଙ୍କୁ ନିଜ ପତି ଭାବରେ ପାଇ ପାରିଥିଲେ। ସୁକନ୍ୟା ବିବାହିତା ଥିଲେ। ରବିଶଙ୍କରଙ୍କ ସହିତ ତାଙ୍କର ସମ୍ପର୍କ ଏକଦା ବିରାଟ ଚର୍ଚ୍ଚାର ବିଷୟ ହୋଇ ଉଠିଥିଲା। ରବିଶଙ୍କରଙ୍କର

ଅନେକ ପ୍ରେମିକାଙ୍କ ମଧ୍ୟରୁ ସେ ଥିଲେ ଅନ୍ୟତମ। ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ ଥିଲା, ସୁକନ୍ୟାଙ୍କ ସହିତ ରବିଶଙ୍କରଙ୍କ ସମ୍ପର୍କକୁ ମଧ୍ୟ ତାଙ୍କ ସ୍ୱାମୀ ଅନୁମୋଦନ କରିଥିଲେ।

ସୁକନ୍ୟା ଥିଲେ ଭାରତୀୟ ବଂଶୋଦ୍ଭବ। ତାଙ୍କ ବାପା ଭାରତୀୟ ସେନାବାହିନୀର ଜଣେ କର୍ଣ୍ଣେଲ ଥିଲେ। ମାତ୍ର ତାଙ୍କ ମା' ସଙ୍ଗୀତ ପ୍ରବୀଣା ଥିଲେ। ହେଲେ ସୁକନ୍ୟାଙ୍କ ରକ୍ଷଣଶୀଳ ପିତା ତାଙ୍କ ମା'ଙ୍କ ପ୍ରତିଭାର ବିକାଶ ପାଇଁ ଆଦୌ ସୁଯୋଗ ଦେଇ ନଥିଲେ। କେବଳ ଘର ଭିତରେ କେତେଜଣ ବନ୍ଧୁଙ୍କ ମେଳରେ ସେ କେବଳ ସଙ୍ଗୀତ ପରିବେଷଣ କରୁଥିଲେ। ସୁକନ୍ୟାଙ୍କ ଉପରେ ମା'ଙ୍କର ପ୍ରଭାବ ଯଥେଷ୍ଟ ପଡ଼ିଥିଲା। ପିଲାଦିନରୁ ସେ ରବିଶଙ୍କରଙ୍କ ମ୍ୟୁଜିକ୍ ପ୍ରତି ଆକର୍ଷିତ ହୋଇଥିଲେ। ଆକାଶବାଣୀର ସଙ୍ଗୀତ ମାଧ୍ୟମରେ ସୁକନ୍ୟା ପଣ୍ଡିତ ରବିଶଙ୍କରଙ୍କ ସହିତ ପରିଚିତ ହୋଇଥିଲେ। ସେତେବେଳେ ତାଙ୍କର ବୟସ ଥିଲା ମାତ୍ର ଆଠବର୍ଷ। ୧୩ ବର୍ଷ ବେଳେ ସେ ମା'ଙ୍କ ସହିତ ମାନ୍ଦ୍ରାଜଠାରେ ଅନୁଷ୍ଠିତ ଏକ ସୀତାର କର୍ମଶାଳାରେ ଭାଗ ନେଇଥିଲେ। ଏଇଠି ତାଙ୍କର ପଣ୍ଡିତ ରବିଶଙ୍କରଙ୍କ ସହିତ ଚାକ୍ଷୁସ ଭେଟ ହୋଇଥିଲା। ସୁକନ୍ୟାଙ୍କର ଏକ ବିଚିତ୍ର ଧାରଣା ମନ ଭିତରେ ସୃଷ୍ଟି ହୋଇଥିଲା ଯେ ରବିଶଙ୍କର ଯେମିତି କେବଳ ତାଙ୍କରି ପାଇଁ ମ୍ୟୁଜିକ୍ ପରିବେଷଣ କରୁଛନ୍ତି। ତାଙ୍କ ମନ ଭିତରେ ରବିଶଙ୍କର ଆସ୍ଥାନ ଜମେଇ ବସିଥିଲେ। ସ୍ୱପ୍ନରେ ସେ ରବିଶଙ୍କରଙ୍କୁ ଦେଖିବାକୁ ଲାଗିଲେ।

ବାରମ୍ବାର ଅନ୍ୟମନସ୍କ ହୋଇପଡୁଥିଲେ ଯୁବତୀ ସୁକନ୍ୟା। ଅତି ଅଳ୍ପ ବୟସରୁ ସେ ରବିଶଙ୍କରଙ୍କୁ ନେଇ ତାଙ୍କର ସ୍ୱପ୍ନର ଦୁନିଆ ଗଡ଼ିବାକୁ ଲାଗିଲେ। ସେ ସ୍ଥିର କରିନେଲେ ଯେ ରବିଶଙ୍କରଙ୍କ ବିହୁନେ ତାଙ୍କ ଜୀବନ ମୂଲ୍ୟହୀନ। ସେତେବେଳେ ରବିଶଙ୍କର ବର୍ଷର ଅଧିକାଂଶ ସମୟ ପାଶ୍ଚାତ୍ୟ ଦେଶମାନଙ୍କରେ କଟାଉଥିଲେ। ବିଶେଷ କରି ଇଂଲଣ୍ଡରେ ତାଙ୍କ କଳାର ଯଥେଷ୍ଟ ଆଦର ଥିଲା। ଅସ୍ଥିରମନା ସୁକନ୍ୟା ହଠାତ୍ ସ୍ଥିର କରିବସିଲେ, ଲଣ୍ଡନ ଯାଇ ଚାକିରୀ କରିବେ ଏବଂ ନିଜର ଇପ୍ସିତ ବାସନା ସେଠାରେ ଚରିତାର୍ଥ କରିବେ। ଗଲେ ମଧ୍ୟ। ଲଣ୍ଡନରେ ଏକ ବ୍ୟାଙ୍କରେ ସୁକନ୍ୟାଙ୍କୁ ଚାକିରୀ ମିଳିଲା। କିନ୍ତୁ ସେଠାରେ ସେ

ଖୁବ୍ ନିଃସଙ୍ଗ ହୋଇପଡ଼ିଲେ। ତେଣୁ ଜଣେ ସାମୟିକ ସାଥୀର ଅନ୍ୱେଷଣରେ ରହିଲେ। କାରଣ ରବିଶଙ୍କରଙ୍କ ପ୍ରତି ତାଙ୍କର ମନ ପ୍ରାଣ ହୃଦୟ ପୂର୍ଣ୍ଣଭାବେ ଅର୍ପିତ ହୋଇସାରିଥିଲା।

ସୁକନ୍ୟାଙ୍କ ଖାମଖିଆଲି ପ୍ରତିଶୃତି ରକ୍ଷା କରିବାକୁ ଜନୈକ ଯୁବକ ଆଗେଇ ଆସିଲେ। ନାମକୁ କେବଳ ସେ ତାଙ୍କ ସ୍ୱାମୀଭାବେ ପରିଚିତ ହେଲେ। ଯୁବକ ଜଣକ ମଧ୍ୟ ସୁକନ୍ୟାଙ୍କ ସମସ୍ତ ସର୍ତ୍ତ ପୂରଣ କରି ତାଙ୍କୁ ବିବାହ କଲେ। ଭଲରେ ଭଲରେ ବିବାହ ହୋଇଗଲା। ସୁକନ୍ୟାଙ୍କୁ କମ୍ପାନୀ ମିଳିଗଲା। କିନ୍ତୁ ମନ ତାଙ୍କର ଖୋଜିବୁଲୁଥିଲା ରବିଶଙ୍କରଙ୍କୁ। ଭିତରେ ଭିତରେ ସୁକନ୍ୟା ମଧ୍ୟ ରବିଶଙ୍କରଙ୍କ ପରିବାରର ସଦସ୍ୟମାନଙ୍କ ସହିତ ସମ୍ପର୍କ ରକ୍ଷା କରିବାକୁ ଲାଗିଲେ। ରବିଶଙ୍କରଙ୍କ ପରିବାରର ଲକ୍ଷ୍ମୀଶଙ୍କରଙ୍କ କନ୍ୟା 'ବିଜି' ସହିତ ସୁକନ୍ୟାଙ୍କ ଘନିଷ୍ଠତା କ୍ରମଶଃ ବୃଦ୍ଧି ପାଇବାକୁ ଲାଗିଲା। ବିଜିଙ୍କ ସାହାଯ୍ୟରେ ସେ ରବିଶଙ୍କରଙ୍କ ନିକଟବର୍ତ୍ତୀ ହୋଇପାରିଥିଲେ।

ଲଣ୍ଡନରେ ରବିଶଙ୍କରଙ୍କର ପ୍ରୋଗ୍ରାମରେ ସୁକନ୍ୟାଙ୍କୁ ଡାକରା ଆସୁଥିଲା। ସେ ଅର୍କେଷ୍ଟ୍ରାରେ ରବିଶଙ୍କରଙ୍କୁ ସହଯୋଗ କରୁଥିଲେ। ତାନପୁରା ବାଦନ କରୁଥିଲେ ସୁକନ୍ୟା। ପ୍ରଥମ ଦର୍ଶନରେ ସୁକନ୍ୟା ଅଭିଭୂତ ହୋଇପଡ଼ିଥିଲେ। ଅତି ପାଖରେ ମନର ମଣିଷକୁ ପାଇ ସୁକନ୍ୟା ନିଜର ହିତାହିତ ଜ୍ଞାନ ମଧ୍ୟ ଭୁଲିଗଲେ। ଏପରିକି ସେ ନମସ୍କାର କରିବାକୁ ମଧ୍ୟ ଭୁଲି ଯାଇଥିଲେ। ରବିଶଙ୍କର ତାଙ୍କୁ ଅର୍କେଷ୍ଟ୍ରାରେ ଗ୍ରହଣ କରିଥିଲେ। ଇଂଲଣ୍ଡରେ ସମସ୍ତ ପ୍ରୋଗ୍ରାମରେ ସୁକନ୍ୟା ତାଙ୍କ ସହିତ ତାନପୁରା ବାଦନ କଲେ। କ୍ରମଶଃ ସୁକନ୍ୟା, ରବିଶଙ୍କରଙ୍କ ନିକଟତର ହେବାକୁ ଲାଗିଲେ।

୧୯୬୭ ମସିହା। ଓଡନ୍ ହଲରେ ଅର୍କେଷ୍ଟ୍ରା ଚାଲିଥାଏ। ରବିଶଙ୍କରଙ୍କ ପାଖରେ ତାନପୁରା ବଜାଉଥାନ୍ତି ସୁକନ୍ୟା। ପରସ୍ପରକୁ ଚାହିଁ ସେମାନେ ନିଜନିଜର ପ୍ରେମ ବିନିମୟ କରିଥିଲେ ସଙ୍ଗୀତର ସୁର ମାଧ୍ୟମରେ। ଯମନ କଲ୍ୟାଣ ରାଗ ଯାହା ସେମାନଙ୍କୁ ନିକଟତର କରିଥିଲା। ଏଣିକି ସୁକନ୍ୟା ରବିଶଙ୍କରଙ୍କର ପ୍ରତିଟି ଭଲମନ୍ଦରେ ଭାଗ ନେଲେ।

ରବିଶଙ୍କରଙ୍କ ସହିତ ସୁକନ୍ୟାଙ୍କର ଦୈହିକ ମିଳନ ହେଲା । ସୁକନ୍ୟା ମଧ୍ୟ ଏଥିପାଇଁ ବହୁପୂର୍ବରୁ ଚାହିଁ ବସିଥିଲେ। ୧୯୮୦ ବେଳକୁ ସେ ଗର୍ଭବତୀ ହେଲେ। ତାଙ୍କ ଗର୍ଭରେ ରବିଶଙ୍କରଙ୍କ ସନ୍ତାନ ବିଷୟରେ ଖୋଲାଖୋଲି ଭାବେ ସୁକନ୍ୟା, ନିଜର ସ୍ୱାମୀଙ୍କୁ ଜଣାଇଦେଲେ। ଆଶ୍ଚର୍ଯ୍ୟର କଥା, ଯୁବକ ଜଣକ ଏହାକୁ ଅନୁମୋଦନ କଲେ। ପ୍ରତାରିତ ହେଲେ ମଧ୍ୟ ଯୁବକ ଜଣକ ସୁକନ୍ୟାଙ୍କୁ ଆଘାତ ଦେଇନଥିଲେ।

ସୁକନ୍ୟାଙ୍କର କନ୍ୟାସନ୍ତାନଟିଏ ଜନ୍ମ ହେଲା। ଯୁବକ ଜଣକ ମଧ୍ୟ ଏହି କନ୍ୟାକୁ ନିଜର ସନ୍ତାନ ଭାବି ପାଳନ କରିବାକୁ ଲାଗିଲେ। ଏହିପରି ଭାବେ କଟିଯାଏ ସାତ ବର୍ଷ ! ଏହି ସାତବର୍ଷ ମଧ୍ୟରେ ଯୁବକ ଜଣକ ବହୁ ମାନସିକ ଯନ୍ତ୍ରଣା ଭୋଗ କରିଛନ୍ତି। କିନ୍ତୁ ସୁକନ୍ୟାଙ୍କ ପ୍ରତି କୌଣସି ପ୍ରକାର ଅସମ୍ମାନ ପ୍ରଦର୍ଶନ କରିନାହାନ୍ତି। ସୁକନ୍ୟା ମୁକ୍ତ ଭାବରେ ରବିଶଙ୍କରଙ୍କ ସହିତ ରାତ୍ରି ପରେ ରାତ୍ରିଯାପନ କରିଛନ୍ତି। ୧୯୮୭ ମସିହା ସୁକନ୍ୟା ସ୍ଥିର କଲେ, ସେ ନିଶ୍ଚୟ ତାଙ୍କର ଇପ୍ସିତ ମଣିଷଟିକୁ ବିବାହ କରିବେ। ସେ ତାଙ୍କର ଯୁବକ ସ୍ୱାମୀଙ୍କୁ ଛାଡ଼ପତ୍ର ଦେଲେ ଏବଂ ଏହାକୁ ଯୁବକ ଜଣକ ମଧ୍ୟ ସ୍ୱୀକାର କଲେ। ମାତ୍ର କନ୍ୟା ସନ୍ତାନଟି ରହିଲା ଯୁବକଙ୍କ ପାଖରେ।

୧୯୮୯ ମସିହା ଜାନୁୟାରୀ ୨୩ ତାରିଖ ଦିନ ସୁକନ୍ୟା ବିବାହ କଲେ ରବିଶଙ୍କରଙ୍କୁ। ସେତେବେଳକୁ ରବିଶଙ୍କରଙ୍କ ବୟସ ୬୯ ଏବଂ ସୁକନ୍ୟାଙ୍କ ବୟସ ୩୯। ସେମାନଙ୍କର ବିବାହ ହୋଇଥିଲା ଆନ୍ଧ୍ରପ୍ରଦେଶର ଏକ ମନ୍ଦିରରେ। ରବିଶଙ୍କରଙ୍କୁ ବିବାହ କରିଥିଲେ ମଧ୍ୟ ସୁକନ୍ୟାଙ୍କର ସେହି କ୍ଷତିଗ୍ରସ୍ତ ଯୁବକଙ୍କ ପ୍ରତି ଉଦାର ସମ୍ମାନ ରହିଥିଲା, ଯିଏ କି ଉଭୟଙ୍କ ପ୍ରେମ ପୀଠରେ ବାରମ୍ବାର ବଳି ପଡ଼ିଥିଲେ।



# ଅଶୃଳ ପ୍ରେମର ଅନ୍ୟନାମ ଗାଲିନା (ଋଷ)

ଋଷିଆର ତୁନ୍ଦ୍ରାଅଞ୍ଚଳ ଅନ୍ତର୍ଗତ ଆରଖାନ୍‌ଜେଲସ ପୋର୍ଟଠାରେ ୧୯୪୯ ମସିହାରେ ଗାଲିନାଙ୍କର ଜନ୍ମ। ତାଙ୍କ ବାପା ଋଷିଆର ରେଡ଼ ଆର୍ମିରେ ଜଣେ କଲୋନେଲ ଏବଂ ମା' ଡାକ୍ତରଖାନାର ଜଣେ ନର୍ସ। ବିଦ୍ୟାଳୟ ଜୀବନରୁ ନୃତ୍ୟଜଗତ ପ୍ରତି ଆସକ୍ତ ହୋଇପଡ଼େ ଶିଶୁକନ୍ୟା ଗାଲିନା। ସାତବର୍ଷ ବେଳକୁ ସେ ଖୁବ୍ ଭଲ ନାଚିପାରୁଥିଲେ। ଝିଅର ନୃତ୍ୟ ପ୍ରତି ଆଗ୍ରହ ଦେଖି ମା' ତାକୁ ପର୍ମ ନାଚ ସ୍କୁଲରେ ଭର୍ତ୍ତି କରାଇଦେଲେ।

> ବିଶ୍ୱର ପ୍ରେମ ଇତିହାସରେ ବୋଧହୁଏ ଏମିତି ଜଣେ ନାରୀ ନାହିଁ, ଯେ କି ଗାଲିନାଙ୍କଠାରୁ ଅଧିକ ଦୁଃଖ ସହିଛି। ତାର ଦୋଷ ହେଲା, ଜଣେ ଇହୁଦୀକୁ ପ୍ରେମ କରିବା ଏବଂ ବିବାହ କରିବା। ସମସ୍ତ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ଗାଲିନା ଦବି ଯାଇନଥିଲେ। ଧୈର୍ଯ୍ୟର ସହିତ ସବୁ ଧୋକ୍କାର ମୁକାବିଲା କରି ବିଜୟିନୀ ହୋଇଥିଲେ। ବିଶ୍ୱ କଳାର ଇତିହାସରେ ଗାଲିନା ଏକ ବହୁ ଚର୍ଚ୍ଚିତ ନାମ।

ଗାଲିନାଙ୍କର ପିଲାଦିନର ସ୍ୱପ୍ନ, ସେ କେମିତି ଜଣେ ବିଶ୍ୱପ୍ରସିଦ୍ଧ ନୃତ୍ୟଶିଳ୍ପୀ ହୋଇପାରିବେ। ପର୍ମ ନାଚ ସ୍କୁଲକୁ ଥରେ ବଲସୋଇ ବାଲେଟ କମ୍ପାନୀ ଆସିଥାଏ। ସେମାନେ ଏଇ ଚପଳମତୀ ନୃତ୍ୟାଙ୍ଗନାର ନୃତ୍ୟ ଦେଖି ଏମିତି ବିମୁଗ୍ଧ ହୋଇଯାଇଥିଲେ ଯେ, ମସ୍କୋକୁ ଜଣେ ଅତିଥି ଶିଳ୍ପୀଭାବେ ତାଙ୍କୁ ନିମନ୍ତ୍ରଣ କରିଥିଲେ। ୧୮ ବର୍ଷ ବୟସରେ ସେ ନୃତ୍ୟ ପ୍ରତିଯୋଗିତାରେ ମସ୍କୋଠାରେ ସ୍ୱର୍ଣ୍ଣପଦକ ଜିତିଥିଲେ। ଏଇଠି ତାଙ୍କୁ ବିଶ୍ୱର ନାମଜରା ନୃତ୍ୟଶିଳ୍ପୀମାନଙ୍କ ସହ ସାକ୍ଷାତର ସୁଯୋଗ ମିଳିଥିଲା। ସେ ସମୟର ପ୍ରସିଦ୍ଧ କାଇରୋଭ ବାଲେଟ କମ୍ପାନୀ ନୂତନ ପ୍ରତିଭାର ଅନ୍ୱେଷଣରେ ଥାଆନ୍ତି। ଏଇ କମ୍ପାନୀର ଖ୍ୟାତିସମ୍ପନ୍ନ ନୃତ୍ୟଶିଳ୍ପୀ ଭାଲେରୀ ପାନୋଭଙ୍କୁ ଗାଲିନା ଭେଟନ୍ତି। ଭାଲେରୀ ତାଙ୍କଠାରୁ ୧୦ ବର୍ଷ ବଡ଼। ସେତେବେଳକୁ ଭାଲେରୀଙ୍କ ନୃତ୍ୟର ଖ୍ୟାତି ଚାରିଆଡ଼େ ବ୍ୟାପିଯାଇଥାଏ। ଏଇ ଶାନ୍ତ ସୌମ୍ୟ ଯୁବକଙ୍କ ପାଇଁ ଗାଲିନାଙ୍କ ମନ ଭିତରେ ଏକ ସ୍ୱତନ୍ତ୍ର ଆସନ ତାଙ୍କ ଅଜ୍ଞାତରେ ସୃଷ୍ଟି ହୋଇସାରିଥିଲା।

ଲେନିନ୍‌ଗ୍ରାଡ଼ଠାରେ ଭାଲେରୀଙ୍କ ସହିତ ଗାଲିନାଙ୍କର ସାକ୍ଷାତ ହୁଏ। ଅବଶ୍ୟ ସେତେବେଳକୁ ଭାଲେରୀ ବିବାହିତ। ଏହା ଜାଣିବା ସତ୍ତ୍ୱେ ମଧ୍ୟ ଭାଲେରୀଙ୍କ ପାଇଁ ତାଙ୍କ ଭିତରେ ଏକ ଅସ୍ୱାଭାବିକ ଦୁର୍ବଳତା ଜନ୍ମ ନେଇ ଯାଇଥାଏ। ଗାଲିନା, ଭାଲେରୀଙ୍କ ସାନିଧ୍ୟ ପାଇଁ ବ୍ୟାକୁଳ ହୋଇଉଠୁଥାନ୍ତି। କିନ୍ତୁ ତତ୍କାଳୀନ ପ୍ରତିଷ୍ଠିତ ଶିଳ୍ପୀ ଭାଲେରୀଙ୍କ ପାଖରେ ପହଞ୍ଚିବା ସହଜ ନଥିଲା।

ଇତିମଧ୍ୟରେ ଦୁଇବର୍ଷ ବିତିଯାଏ। ମନ ଭିତରେ ମନ କଥା ରହିଯାଏ। ଗାଲିନା ସାଇବେରିଆ ଥିଏଟର ପାଇଁ କାମ କରନ୍ତି। ଏଇ ଥିଏଟର କମ୍ପାନୀରେ ସେ ବିଭିନ୍ନ ସ୍ଥାନକୁ ନୃତ୍ୟ ପ୍ରଦର୍ଶନ କରିବାକୁ ଯାଆନ୍ତି। ଥରେ ତାଙ୍କ କମ୍ପାନୀ ମସ୍କୋ ଯାଇଥିବାବେଳେ ଭାଲେରୀଙ୍କ ସହିତ ଗାଲିନାଙ୍କର ସାକ୍ଷାତ ହୁଏ। ସେତେବେଳକୁ ନିଜ ପତ୍ନୀକୁ ଡାଇଭର୍ସ କରି ଭାଲେରୀ ଏକା ରହୁଥାନ୍ତି। କିଛି ସମୟ ଉଭୟଙ୍କ ମଧ୍ୟରେ ଆଳାପ ଆଲୋଚନା ଚାଲିଲା। ବଲସୋଇ କିମ୍ବା କାଇରୋଭ କମ୍ପାନୀର ସଦସ୍ୟ ନହେବା ପର୍ଯ୍ୟନ୍ତ ତାଙ୍କ ନୃତ୍ୟକୁ ଯଥାର୍ଥ ସମ୍ମାନ ମିଳିବ ନାହିଁ ବୋଲି ନିଜର ଖେଦୋକ୍ତି ପ୍ରକାଶ କରିଥିଲେ ଗାଲିନା। ଭାଲେରୀ ମଧ୍ୟ ତାଙ୍କୁ ଏଥିରେ ସମର୍ଥନ କରିଥିଲେ ଏବଂ ତାଙ୍କ ପାଇଁ ଚେଷ୍ଟା କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ। ଇତ୍ୟବସରରେ ଗାଲିନାଙ୍କ ପିତୃ ବିୟୋଗ ହୋଇଯାଇଥାଏ। ସେ ପାର୍ମ ଫେରିଆସି ଭାଲେରୀଙ୍କ ଚିଠିକୁ ଆଗ୍ରହର ସହିତ ଅପେକ୍ଷା କରିଥାନ୍ତି। ଅପେକ୍ଷା...ଅପେକ୍ଷା ଭିତରେ ଅନେକ ଦିନ କଟିଗଲା।

ସାଇବେରିଆ ଥିଏଟର ଥରେ ଡନ୍-କୁଇକୋଟ ବାଲେଟ ପରିବେଷଣ କରୁଥାଏ। ଏଥିରେ ଉଭୟ ଗାଲିନା ଏବଂ ଭାଲେରୀ ମୁଖ୍ୟ ଚରିତ୍ରରେ ଥାଆନ୍ତି। ଏହି ବାଲେଟ ସେମାନଙ୍କ ଅନ୍ତରଙ୍ଗତାକୁ ଆହୁରି କିଛିଟା ବୃଦ୍ଧି କରାଇ ଦେଇଥିଲା। ଇତି ମଧ୍ୟରେ ଆଉ ଏକ ବର୍ଷ ଅତୀତ ହୋଇସାରିଥାଏ। ଏକ ଟେଲିଗ୍ରାମ ଭାଲେରୀଙ୍କ ପାଖରୁ ପାଇ ଲେନିନଗ୍ରାଡ଼ରେ ପହଞ୍ଚିଲେ ଗାଲିନା। କାଇରୋଭ କମ୍ପାନୀ ଗାଲିନାଙ୍କ ରୋଲର ସମୀକ୍ଷା କରି ସ୍ଥାନ ଖାଲିହେଲେ ତାଙ୍କୁ ନିଆଯିବ ବୋଲି ସାନ୍ତ୍ୱନାବାଣୀ ଶୁଣାଇଲେ। ମସ୍କୋ ଟେଲିଭିଜନରେ ଗାଲିନାଙ୍କର ନୃତ୍ୟ ବେଶ୍ ଚର୍ଚ୍ଚାର ବିଷୟ ହୋଇଥାଏ। ଏଇ ଅବସରରେ ତାଙ୍କୁ ବଧାଇ ଜଣାଇ ଭାଲେରୀ ନିଜ ମନକଥା ଜଣାଇଥିଲେ - 'ତମେ ମୋତେ ବିବାହ କରିପାରିବ ?' ନିଜ କାନକୁ ପ୍ରଥମେ ବିଶ୍ୱାସ କରିପାରି ନଥିଲେ ଗାଲିନା। ଅନେକ ଦିନର ସ୍ୱପ୍ନ ତାଙ୍କର ସାର୍ଥକ ହେବ। ଲେନିନଗ୍ରାଡ଼ ଷ୍ଟେସନରୁ

ଗାଲିନାଙ୍କୁ ଅଭିବାଦନ ଜଣାଇଥିଲେ ଭାଲେରୀ ଏବଂ ନିଜର ଛୋଟ ଘରକୁ ପାଛୋଟି ନେଇ ଯାଇଥିଲେ। ଗଲାବେଳେ ଗାଲିନା ତାଙ୍କୁ ସତର୍କ କରାଇ ଦେଇଥିଲେ ଯେ ଗାଲିନାଙ୍କୁ ବିବାହ କରୁଥିବାରୁ ଋଷିଆ ଛାଡ଼ିଲାବେଳେ ଏଥିପାଇଁ ତାଙ୍କୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିପାରେ। ହେଲେ ଭାଲେରୀ କୌଣସି କଥା ଶୁଣିବା ଅବସ୍ଥାରେ ନଥିଲେ। ଗାଲିନା ଥିଏଟର କମ୍ପାନୀ ଏବଂ ମା'ଙ୍କୁ ମଧ୍ୟ ନିଜ ବିବାହ ବିଷୟରେ ଜଣାଇ ଦେଇଥିଲେ। ପରେ ପରେ ଥିଏଟର କମ୍ପାନୀ ଛାଡ଼ି ଗାଲିନା ନିଜ ସ୍ୱାମୀଙ୍କ ସହ ଲେଲିନଗ୍ରାଡ୍ ଆସିଲେ।

କାଇରୋଭ ବାଲେ କମ୍ପାନୀରେ ଗାଲିନାଙ୍କୁ ଜଣେ ସଦସ୍ୟ ଭାବେ ନିଆଗଲା। ଭାଲେରୀ ଏବଂ ଗାଲିନାଙ୍କ ରୋଲ ବେଶ୍ କିଛିଟା ହଇଚଇ ସୃଷ୍ଟି କରିଥିଲା। ଜୀବନକୁ ପରିପୂର୍ଣ୍ଣ ଭାବରେ ଉପଭୋଗ କରି ଚାଲିଲେ ଗାଲିନା ଏବଂ ଭାଲେରୀ। ହଠାତ୍ ଦିନେ ଶୁଣିବାକୁ ମିଳିଲା ଯେ ଋଷିଆ ସରକାର ଇସ୍ରାଏଲ ଯିବାକୁ ଇଚ୍ଛୁକ ବ୍ୟକ୍ତିବିଶେଷଙ୍କୁ ଭିସା ପ୍ରଦାନ କରୁଛନ୍ତି। ଏହାର ସୁଯୋଗ ନେବାକୁ ଉଭୟ ଆଗେଇ ଆସିଲେ। ଗାଲିନା ଏବଂ ଭାଲେରୀ ମଧ୍ୟ ଏଥିପାଇଁ ଆବେଦନ କଲେ। ଏଥିପାଇଁ କାଇରୋଭ କମ୍ପାନୀର ଅନୁମତି ଆବଶ୍ୟକ ହେଲା। ଏଥିପାଇଁ ମଧ୍ୟ ଉଭୟ ଆବେଦନ କଲେ।

ଟେଲିଫୋନରେ ଧମକ ଆସିଲା ଗାଲିନାଙ୍କୁ। କାରଣ ତାଙ୍କ ସ୍ୱାମୀ ଜଣେ ଇହୁଦୀ। ତାଙ୍କ ସହିତ ଋଷିଆ ଛାଡ଼ିବାକୁ ଅନୁମତି ମିଳିବା ଅସମ୍ଭବ। ଭାଲେରୀଙ୍କୁ ଡାଇଭର୍ସ କରି ଆଉ ଏକ ସ୍ୱାମୀ ଗ୍ରହଣ କରିବା ପାଇଁ ତାଙ୍କୁ ଉପଦେଶ ଦିଆଗଲା। ଭାଲେରୀଙ୍କୁ ଛାଡ଼ପତ୍ର ଦେଲେ ତାଙ୍କୁ ନମ୍ବରୱାନ୍ ପୋଜିସନ ମିଳିବ ବୋଲି କାଇରୋଭ କମ୍ପାନୀ ତରଫରୁ ବାରମ୍ବାର ଗାଲିନାଙ୍କୁ ପ୍ରବର୍ତ୍ତାଗଲା। ମାତ୍ର ଗାଲିନା କୌଣସି ପରିସ୍ଥିତିରେ ଭାଲେରୀଙ୍କୁ ଛାଡ଼ିବାକୁ ପ୍ରସ୍ତୁତ ନଥିଲେ। କମ୍ପାନୀରୁ ଭାଲେରୀଙ୍କୁ ଅନ୍ୟାୟ ଭାବେ ତଡ଼ି ଦିଆଗଲା। ନିଜ ମା' ପାଖକୁ ସାନ୍ତ୍ୱନା ପାଇଁ ଗଲେ ଗାଲିନା। ସେତେବେଳକୁ ଋଷୀୟ ପୋଲିସ ତାଙ୍କ ମା'ଙ୍କ ବ୍ରେନ୍ ୱାସ୍ କରି ସାରିଥାନ୍ତି। ମା'ଙ୍କ ପାଖରୁ ଅସଂଖ୍ୟ ଗାଳି ହଜମ କରିବାକୁ ପଡ଼ିଲା। ନିରାଶ ହୋଇ ସେମାନେ ସାର୍ମରୁ ଫେରିଲେ। ପୋଲିସ ବୁଦ୍ଧିରେ ତାଙ୍କ ମା' ଏକ ମିଥ୍ୟା କେଶ୍ ଦାଏର କରିଥିଲେ ଯେ ଭାଲେରୀ ତାଙ୍କ ପ୍ରତି ଅସତ୍ ବ୍ୟବହାର କରିଛି ବୋଲି। ଭାଲେରୀଙ୍କୁ ସାଙ୍ଗେ ସାଙ୍ଗେ ଋଷୀୟ ପୋଲିସ ଗିରଫ

କଲେ। ପରେ ଅବଶ୍ୟ ବହୁ କଷ୍ଟରେ ତାଙ୍କୁ ମୁକ୍ତି ମିଳିଥିଲା। କାଇରୋଭ ଥିଏଟରରୁ ଭାଲେରୀଙ୍କ ପରେ ପରେ ଗାଲିନାଙ୍କ ପାଳି ପଡ଼ିଲା। ଥିଏଟର ଛାଡ଼ିବା ପରେ ପରେ ବଞ୍ଚିବା ସେମାନଙ୍କ ପାଇଁ କଷ୍ଟସାଧ୍ୟ ହୋଇପଡ଼ିଲା। ବାରମ୍ବାର ମିଥ୍ୟା ମୋକଦ୍ଦମାରେ ଭାଲେରୀଙ୍କୁ ଗିରଫ କରାଗଲା। ଏହାପରେ ଉଭୟ ଭାଲେରୀଙ୍କ ଭାଇଙ୍କ ପାଖକୁ ଲିଥୋନିଆ ଚାଲିଗଲେ। କିଛି ସପ୍ତାହ ସେଠାରେ ରହିବା ପରେ ପୁଣି ଲେନିନଗ୍ରାଡ୍ ଫେରିବାକୁ ପଡ଼ିଲା। ଋଷିଆ ସରକାର ତାଙ୍କୁ ବହୁ ପ୍ରକାରେ ହଇରାଣ ହରକତ କରିବାକୁ ଆରମ୍ଭ କଲେ। ଜିନିଷପତ୍ର ଫିଙ୍ଗି ଦିଆଗଲା, ଟେଲିଫୋନ କାଟି ଦିଆଗଲା। ଆସବାବ, ବହିପତ୍ର ବିକି ଉଭୟ କିଛିଦିନ ଚଳିଗଲେ। ପ୍ରତି ମୁହୂର୍ତ୍ତରେ ସେମାନେ ବିପଦର ଆଶଙ୍କା କଲେ। ଭାଲେରୀଙ୍କ ଭାଇ ସେମାନଙ୍କ ପାଖକୁ ଟିଣଖାଦ୍ୟ ପଠାଉ ଥିବାରୁ କୌଣସି ପ୍ରକାରେ ଉଭୟ ଚଳିଯାଉଥିଲେ। ମା' ଏବଂ ଭଉଣୀ ଗାଲିନା ଉପରେ ଚାପ ପ୍ରୟୋଗ କଲେ ନିଜ ସ୍ୱାମୀଙ୍କୁ ଡାଇଭର୍ସ କରିବା ପାଇଁ। ବାରମ୍ବାର ଋଷିଆ ସରକାର ଦ୍ୱାରା ଅପଦସ୍ତ ହେବା ପରେ ଭାଲେରୀ ୨୧ ଦିନିଆ ଆମରଣ ଅନଶନ ଆରମ୍ଭ କଲେ। ଘଟଣା ସମ୍ବାଦପତ୍ରମାନଙ୍କରେ ପ୍ରାକାଶିତ ହୋଇଯିବାରୁ ଇଂଲଣ୍ଡ, ଆମେରିକାରେ ଋଷୀୟ ଦୂତାବାସ ସମ୍ମୁଖରେ ବିକ୍ଷୋଭମାନ ପ୍ରଦର୍ଶନ କରାଗଲା।

ଭାଲେରୀଙ୍କ ଅବସ୍ଥା ସଙ୍କଟାପନ୍ନ ହେବା ବେଳକୁ ସେମାନଙ୍କ ଭିସା ବିଷୟ ବିଚାର କରାଯାଉଛି ବୋଲି ଏକ ଫୋନ୍ ପହଞ୍ଚିଲା। ପରେ ଏହା ଏକ ଜାଲିଆତି ବୋଲି ଜଣାପଡ଼ିଲା। ବହୁ କଷ୍ଟରେ ଭାଲେରୀଙ୍କୁ ଭିସା ମିଳିଲା। କିନ୍ତୁ ଗାଲିନାଙ୍କୁ ମିଳିଲା ନାହିଁ। ମା'ଙ୍କ ଅନୁମତି ବିନା ଭିସା ମିଳିବା ଅସମ୍ଭବ ବୋଲି ଗାଲିନାଙ୍କୁ ଜଣାଇ ଦିଆଗଲା। ଉଭୟ ଖୁବ୍ ଭାଙ୍ଗି ପଡ଼ିଲେ।

ଏମିତି ଦୁର୍ଦ୍ଦିନ ଭିତରେ ଗାଲିନା ଗର୍ଭବତୀ ହୋଇସାରିଥାନ୍ତି। ଭିଲିନସଠାରେ ଗାଲିନାଙ୍କୁ ଛାଡ଼ି ଭାଲେରୀ ନିଜ ଭାଇକୁ ନେଇ ମସ୍କୋ ଗଲେ। ଇତି ମଧ୍ୟରେ ଯନ୍ତ୍ରଣା ହେବାରୁ ଗାଲିନାଙ୍କୁ ଡାକ୍ତରଖାନାରେ ଭର୍ତ୍ତି କରାଗଲା। ସାଙ୍ଗେ ସାଙ୍ଗେ ଖବର ମିଳିଲା ଯେ ଭାଲେରୀ ଏବଂ ତାଙ୍କ ଭାଇ ଡାକ୍ତରଖାନାରେ ଭର୍ତ୍ତି ହୋଇଛନ୍ତି। କ'ଣ କରିବେ କିଛି ଚିନ୍ତାକରି ପାରିଲେନି ଗାଲିନା। ଚତୁର୍ଦ୍ଦିଗ ତାଙ୍କୁ ଅନ୍ଧକାର ଦେଖାଗଲା। ନିଜ ଅସୁସ୍ଥତା ସତ୍ତ୍ୱେ ଗାଲିନା ଦୁଇଦିନ କଟାଇଥିଲେ ସ୍ୱାମୀଙ୍କ ଶଯ୍ୟା ପାଖରେ। ପରେ ତାଙ୍କୁ ଭିଲିନସ ଫେରିଆସି ବିଶ୍ରାମ ନେବାକୁ ପଡ଼ିଲା। ଇତି ମଧ୍ୟରେ ଉଭୟଙ୍କର ଭିସା ମିଳିଯାଇଥିଲା।

ଭାଲେରୀ ଲେନିନଗ୍ରାଡ୍ ଚାଲିଗଲେ। ଦୁଇଦିନ ହଷ୍ଟେଲରେ ରହି ଗାଲିନା ତାଙ୍କୁ ଭେଟିବାର କଥା ହେଲା। ଫ୍ଲାଇଟ୍ ଗୋଟେଦିନ ବିଳମ୍ବ ହୋଇଯିବାରୁ ଗାଲିନା ବିଳମ୍ବରେ ଏୟାର୍‌ପୋର୍ଟରେ ପହଁଚିଲେ। ସେତେବେଳକୁ ଭାଲେରୀ ମୂର୍ଚ୍ଛାହୋଇ ଯାଇଥିଲେ ଅନିଶ୍ଚିତ ବିପଦର ଆଶଙ୍କାରେ।

ଏୟାର୍‌ପୋର୍ଟରେ ପହଞ୍ଚି ଉଭୟ ଟିକେଟ ପାଇଁ ଗଲେ। ଶେଷ ମୁହୂର୍ତ୍ତରେ ଏକ ଟେଲିଗ୍ରାମ ପହଞ୍ଚିଲା, ମା'ଙ୍କ ତିନିହଜାର ଋଣର ପରିଶୋଧ ନକଲେ ତାଙ୍କୁ ଟିକେଟ ମିଳିବ ନାହିଁ। ବଜ୍ରପଡ଼ିଲା ଗାଲିନାଙ୍କ ମୁଣ୍ଡରେ। ଖୁବ୍ ଶୀଘ୍ର ସମସ୍ତ ଋଣ ପରିଶୋଧ କରିଦେବେ ବୋଲି ମା'ଙ୍କ ପାଖକୁ ଏକ ଟେଲିଗ୍ରାମ କଲେ ଗାଲିନା। ଏୟାର୍‌ପୋର୍ଟର ଅଫିସରମାନେ କୌଣସି ପ୍ରକାରେ ବୁଝିଯିବାରୁ ସେମାନଙ୍କୁ ଟିକେଟ ମିଳିଗଲା। ଉଡ଼ାଜାହାଜରେ ଗଲାବେଳେ ନିଜର ପିନ୍ଧିଥିବା ବସ୍ତ୍ରଛଡ଼ା ସେମାନଙ୍କ ପାଖରେ ଆଉ କିଛି ନଥିଲା। ଚାରିଦିନ ଧରି ସେମାନେ କେବଳ ପାଣିପିଇ ଜୀବନ ଧାରଣ କରିଥିଲେ। ଋଷ୍‌ର ମାଟି ଛାଡ଼ିଲା ବେଳେ ଗାଲିନାଙ୍କ ମନରେ ଆଦୌ ଦୁଃଖ ନଥିଲା। ଋଷରୁ ଉଡ଼ାଜାହାଜ ଇସ୍ରାଏଲ ଅଭିମୁଖେ ଯାତ୍ରା ଆରମ୍ଭ କଲା। ଋଷ ଆକାଶ ଛାଡ଼ିବା ପରଠୁଁ ଉଭୟଙ୍କ ଭିତରେ ଜୀବନର ସଞ୍ଚାର ହେଲା। ବୁଦାପେଷ୍ଟଠାରେ ସେମାନେ ଭିଏନା ପାଇଁ ଆଉ ଏକ ଯାନରେ ବସିଲେ। ଉଡ଼ାଜାହାଜ ଉଡ଼ିବା ଆରମ୍ଭ କରିବାରୁ ଅନ୍ତେବାସୀଗଣ ସାମ୍ପେନ୍ ଖୋଲି ନୂଆ ଜୀବନର ସ୍ୱାଗତ କରିଥିଲେ। ତେଲ-ଆଭିଭ ଏୟାରପୋର୍ଟରେ ସେମାନଙ୍କୁ ପାଛୋଟି ନେବା ପାଇଁ ବହୁ ବନ୍ଧୁ ଅପେକ୍ଷା କରିଥିଲେ। ଏଇଠୁ ଆରମ୍ଭ ହେଲା ଉଭୟଙ୍କର ନୂଆ ଜୀବନ।

ଇସ୍ରାଏଲରେ ପହଞ୍ଚିବା ପରେ ତାଙ୍କ ପାଇଁ ଟନ୍ ଟନ୍ ଶୁଭେଚ୍ଛା ଚିଠି ଅପେକ୍ଷା କରିଥିଲା। ଅନେକ ଦିନ କଟିଗଲା ଟେଲିଭିଜନ, ରେଡ଼ିଓ ଇଣ୍ଟରଭିଉ, ରିସେପସନ୍ ଆଦିରେ। ଶେଷରେ ୧୯୭୪ ନଭେମ୍ବର ମାସଠାରୁ ଉଭୟ ଆରମ୍ଭ କଲେ ଜେରୁଜେଲମରେ 'ଓପନଏୟାର ଥିଏଟର'। ବହୁ ଶୁଭେଚ୍ଛୁ ସାହାଯ୍ୟ ପାଇଁ ଆଗେଇ ଆସିଲେ। ଯନ୍ତ୍ରଣାଦାୟକ ଯାତ୍ରା ପରେ ଜୀବନର ଉତ୍ତୀର୍ଣ୍ଣ ସ୍ୱାଦକୁ ଅନୁଭବ କରୁଥିଲେ ଭାଲେରୀ ଏବଂ ଗାଲିନା। ଆଜି ଜୀବନ ସେମାନଙ୍କ ପାଇଁ ସତେଜ ଏବଂ ସ୍ୱପ୍ନିଳ।

---

## ବାର୍ ହୋଷ୍ଟେସ୍‌ରୁ ଫାଷ୍ଟ ଲେଡି (ଜାପାନ)

୧୯୫୯ ମସିହାର ଏକ ରଙ୍ଗୀନ ସନ୍ଧ୍ୟା। ଟୋକିଓ ନଗରୀ ଉପରେ ଶୀତର ସବୁଜିମା ବହଳ ହୋଇ ଆସୁଥାଏ। ସେଦିନ ଏହି ମହାନଗରୀରେ ଅତିଥି ହୋଇଥାନ୍ତି ଇଣ୍ଡୋନେସିଆର ପ୍ରଥମ ରାଷ୍ଟ୍ରପତି ଡଃ ବଙ୍ଗୋବର୍ଣ୍ଣୋ ସୁକର୍ଣ୍ଣୋ। ତାଙ୍କ ପରିଚର୍ଯ୍ୟା ପାଇଁ ଜାପାନ ସରକାର ତତ୍ପର ହୋଇ ଉଠିଥାନ୍ତି। ନାରୀ, ମଦ, ମାଂସର ଫେନିଳ ଶଯ୍ୟାରେ ଜୀବନକୁ ଉପଭୋଗ କରି ଚାଲିଥିବା ଏହି ରଙ୍ଗୀନ ମଣିଷଙ୍କ ପାଇଁ ଟୋକିଓର ସର୍ବଶ୍ରେଷ୍ଠ ସୁନ୍ଦରୀ ଜଣେ ବାର୍ ହଷ୍ଟେସ୍‌ଙ୍କୁ ନିଯୁକ୍ତି କରାଯାଇଥାଏ।

ସେହି ଗୋଟିଏ ରାତ୍ରି ମଧ୍ୟରେ ଏହି ସୁନ୍ଦରୀ ଜଣକ ନିଜର କାମନାର ଜାଲରେ ଆବଦ୍ଧ କରିପାରିଥିଲେ ଇଣ୍ଡୋନେସିଆର ଶକ୍ତିଶାଳୀ ମଣିଷଟିକୁ। ନାରୀର ମାଂସ ସହିତ ଅନେକ ଦିନୁ ଖେଳିଆସୁଥିବା ସୁକର୍ଣ୍ଣୋ ପ୍ରଥମ ଥର ପାଇଁ ଦୁର୍ବଳ ହୋଇଯାଇଥିଲେ ଏହି ଜାପାନୀ ଲଳନା ପାଖରେ। ତାଙ୍କୁ ପତ୍ନୀ ରୂପେ ପାଇବାର ଆଶା ସୁକର୍ଣ୍ଣୋଙ୍କର ପ୍ରବଳ ହୋଇଉଠିଥିଲା। ଇତି ପୂର୍ବରୁ ସୁକର୍ଣ୍ଣୋଙ୍କର ତିନୋଟି ସ୍ତ୍ରୀ ଥିଲେ। ଏ ସମସ୍ତ ଜାଣି ମଧ୍ୟ ଏହି ଜାପାନୀ ତରୁଣୀ ଜଣକ ସୁକର୍ଣ୍ଣୋଙ୍କ ପ୍ରସ୍ତାବରେ ସମ୍ମତ ହୋଇଥିଲେ। ସେହି ଗୋଟିଏ ରାତ୍ରି ମଧ୍ୟରେ ସବୁକିଛି ମିମାଂସା ହୋଇଗଲା।

> ୧୯ ବର୍ଷର ଏହି ଜାପାନୀ ସୁନ୍ଦରୀଙ୍କ ହାତରେ ଥିଲା ମଦ୍ୟପାତ୍ର.... ଆଖିରେ ଥିଲା ଆକର୍ଷଣ.... ହୃଦୟରେ ଲୁଚି ରହିଥିଲା ଛଳନାର ଏକ ତାଜା ଆସ୍ତରଣ। ସାମାନ୍ୟ ବାର୍ ହଷ୍ଟେସ୍‌ରୁ ଜଣେ ରାଷ୍ଟ୍ରପତିଙ୍କ ପତ୍ନୀ ହେବାର ନିଶା ତାଙ୍କୁ ଆଗେଇ ନେଇଥିଲା ବହୁ ଦୂରକୁ.... ଆଶାର ଅସରନ୍ତି ସବୁଜ ପଥକୁ....।

ରୂପ ଏବଂ କାମନାର ଜଳରେ ସୁକର୍ଣ୍ଣୋ ଅବଗାହନ କରୁଥିବା ବେଳେ ଜାପାନୀ ତରୁଣୀ ଜଣକ ଖ୍ୟାତି, ସମ୍ପଦ ଏବଂ କ୍ଷମତାର ମୋହରେ ଅନ୍ଧ ଥିଲେ। ସେହିଦିନ ରାତିରେ ସେମାନେ ବିବାହ କରିବେ ବୋଲି ନିର୍ଣ୍ଣୟ କରିନେଲେ। ବିବାହ ପରେ ଏହି ଜାପାନୀ ସୁନ୍ଦରୀଙ୍କ

ନାମ ହେଲା 'ରତ୍ନାସରି ଦେବୀ'। ସୁକର୍ଣ୍ଣୋ ଏଇ ତରୁଣୀଙ୍କ ଦେହରେ ଖୋଜୁଥିଲେ ରତ୍ନର ଫସଲ। ଉଭୟଙ୍କ ମଧ୍ୟରେ ବୟସର ଯଥେଷ୍ଟ ତାରତମ୍ୟ ଥିଲା। ଜାପାନୀ ତରୁଣୀଙ୍କୁ ବୟସ ୧୯ ହୋଇଥିବା ବେଳେ, ସୁକର୍ଣ୍ଣୋଙ୍କ ବୟସ ଥିଲା ୫୮ ବର୍ଷ। ଅର୍ଥାତ୍ ୪୦ ବର୍ଷ ସୁକର୍ଣ୍ଣୋ ବଡ଼ ଥିଲେ।

ବୟସର ଅପରାହ୍ନରେ ସୁକର୍ଣ୍ଣୋ ମନଲାଖି ତରୁଣୀରତ୍ନ ଲାଭ କରିଥିବାରୁ ପତ୍ନୀର ସୁଖସମ୍ଭୋଗ ଲାଗି ସବୁକିଛି ତ୍ୟାଗ କରିବାକୁ ପ୍ରସ୍ତୁତ ଥିଲେ। ଇଣ୍ଡୋନେସିଆର ରାଜଧାନୀ ଜାକର୍ତ୍ତାର ବିବେରନଠାରେ ସୁକର୍ଣ୍ଣୋ ଏକ ବିଶାଳ କାରୁକାର୍ଯ୍ୟ ଖଚିତ ରାଣୀହଂସପୁର ନିର୍ମାଣ କରିଥିଲେ। ଖାଲି ଗୋଟିଏ ଯାଗାରେ ନୁହେଁ। 'ରତ୍ନା'ଙ୍କ ପାଇଁ ସେ ଟୋକିଓ, ପ୍ୟାରିସ୍, ହଂକଂ ଆଦି ସ୍ଥାନରେ ବହୁ ମୂଲ୍ୟର ପ୍ରାସାଦମାନ ନିର୍ମାଣ କରିଥିଲେ। ପତ୍ନୀ 'ରତ୍ନା' ମଧ୍ୟ ଶାସନ କାର୍ଯ୍ୟରେ ବାରମ୍ବାର ହସ୍ତକ୍ଷେପ କରୁଥିଲେ ସୁଦ୍ଧା ରାଷ୍ଟ୍ରପତି ନୀରବ ରହୁଥିଲେ। ଜାପାନ ଏବଂ ଇଣ୍ଡୋନେସିଆ ମଧ୍ୟରେ ବାଣିଜ୍ୟିକ ସାଣିସାଗକୁ ଅଧିକ ସୁଦୃଢ଼ କରିଥିଲେ। ଏହି ଜାପାନୀ ତରୁଣୀ ଜଣକ ନିଜ ନାମରେ ପ୍ୟାରିସ୍, ହଂକଂ, ଜାପାନ ଏବଂ ସୁଇସ୍ ବ୍ୟାଙ୍କରେ ଯଥେଷ୍ଟ ସମ୍ପଦ ଜମା କରିଥିଲେ। କୌଣସି କାର୍ଯ୍ୟରେ ସୁକର୍ଣ୍ଣୋ ତାଙ୍କୁ ବାଧା ଦେଇନଥିଲେ।

କେବଳ ପତ୍ନୀଙ୍କୁ ଖୁସି କରାଇବାକୁ ଯାଇ ସୁକର୍ଣ୍ଣୋ କମ୍ୟୁନିଷ୍ଟ ନୀତିକୁ ଗ୍ରହଣ କରି ମାଓସେତୁଙ୍ଗଙ୍କ ସହିତ ଉତ୍ତମ ସମ୍ପର୍କ ରକ୍ଷା କରିଥିଲେ। କିନ୍ତୁ କମ୍ୟୁନିଷ୍ଟ ଗରିଲ୍ଲାମାନେ ସୈନ୍ୟବିଭାଗର ୯ ଜଣ ବରିଷ୍ଠ ଅଫିସରଙ୍କୁ ହତ୍ୟା କରିବା ପରେ ଅବସ୍ଥା ଅନ୍ୟ ପ୍ରକାର ହୋଇଥିଲା। ଜେନେରାଲ ସୁହାର୍ତ୍ତୋଙ୍କ ନେତୃତ୍ୱରେ ସୈନ୍ୟବାହିନୀ ବିଦ୍ରୋହ ଘୋଷଣା କରିଥିଲା। ସେମାନେ ସୁକର୍ଣ୍ଣୋଙ୍କୁ ନଜରବନ୍ଦୀରେ ରଖିଲେ। ନାମକୁ ମାତ୍ର ରାଷ୍ଟ୍ରପତି ହୋଇ ରହିଲେ ସୁକର୍ଣ୍ଣୋ। କିନ୍ତୁ ସମଗ୍ର କ୍ଷମତା ରହିଲା ଜେନେରାଲ ସୁହାର୍ତ୍ତୋଙ୍କ ହାତରେ। ଏହିପରି ଭାବେ ଦୁଇବର୍ଷ ବିତିଗଲା। ସୁକର୍ଣ୍ଣୋଙ୍କ ହାବଭାବରେ କୌଣସି ପରିବର୍ତ୍ତନ ଆସିଲା ନାହିଁ। ଏହି ସମୟ ମଧ୍ୟରେ ପତ୍ନୀ ରତ୍ନା ମିଲିଟାରୀ ଶାସନ ଏବଂ ସୁକର୍ଣ୍ଣୋଙ୍କ ମଧ୍ୟରେ ଏକ ପ୍ରକାର ମିଳାମିଶା କରିବା ପାଇଁ ଉଦ୍ୟମ କରି ବିଫଳ ହୋଇଥିଲେ। ସୁକର୍ଣ୍ଣୋ ଦୀର୍ଘ ଦିନ ଧରି ଏକଛତ୍ରବାଦୀ ଶାସକ ରହି

ଆସିଥିବାରୁ ସେ ଏତେ ଶୀଘ୍ର ଗଣତାନ୍ତ୍ରିକ ଭାବଧାରାକୁ ମାନିନେବାକୁ ପ୍ରସ୍ତୁତ ନଥିଲେ। ୧୯୬୭ ମାର୍ଚ୍ଚ ୨୭ ତାରିଖରେ ସୁକର୍ଣ୍ଣୋଙ୍କୁ ରାଷ୍ଟ୍ରପତି ପଦବୀରୁ ଅବ୍ୟାହତି ଦିଆଯାଇ ନଜରବନ୍ଦୀରେ ରଖାଗଲା। ରନ୍ନାଙ୍କ ପ୍ରାସାଦ ଚାରିପଟେ ସୈନ୍ୟମାନେ ଜଗି ରହିଲେ। ହାତରୁ କ୍ଷମତା ଏବଂ ସମ୍ପଦ ଚାଲିଯିବାରୁ ଏଥର ରନ୍ନାଦେବୀ ସୁକର୍ଣ୍ଣୋଙ୍କ ପାଶରୁ ମୁକ୍ତି ପାଇଁ ମନ ବଳାଇଲେ।

ଜୀବନସାରା ଛଳନାର ଖେଳ ଖେଳିଆସିଥିବା ରନ୍ନା ଏଥର ମଧ୍ୟ ଏକପ୍ରକାର ଖେଳ ଖେଳିଲେ। ସେ ଆଉ ଅଧିକ କାଳ ଜଣେ କ୍ଷମତା ଏବଂ ସମ୍ପଦହୀନ ବୃଦ୍ଧ ପାଖରେ ରହିବାକୁ ପସନ୍ଦ କଲେନାହିଁ। ସେତେବେଳକୁ ସେ ଅନ୍ତଃସତ୍ତ୍ୱା ଥିଲେ। ପିତ୍ରାଳୟରେ ନିଜର ସନ୍ତାନକୁ ଜନ୍ମ ଦେବା ଉଦ୍ଦେଶ୍ୟରେ ସେ ଜାପାନ ଚାଲିଆସିଲେ। ଫ୍ରାନ୍ସଠାରେ ସେ କନ୍ୟାସନ୍ତାନଟିକୁ ଜନ୍ମ ଦେଲେ। ଏହାର ନାମ ରହିଲା କାର୍ତ୍ତିକାସରି ଦେବୀ। ନିଜ ନାମରେ ଗଚ୍ଛିତ ଥିବା ବିପୁଳ ଅର୍ଥକୁ ଏଥର ମନଇଚ୍ଛା ଖର୍ଚ୍ଚ କରିବା ଆରମ୍ଭ କରିଦେଲେ ରନ୍ନା। ଫ୍ରାନସ୍ ରହଣି ସମୟରେ ତାଙ୍କ ପାଖରେ ଥିଲେ ଜଣେ ଫରାସୀ ସେକ୍ରେଟାରୀ ଜଣେ ଜାପାନୀ ଆୟା ଏବଂ ଆଉ ଜଣେ ସ୍ପେନ୍‌ର ଚାକରାଣୀ। ରାଣୀ ଭଳି ରହୁଥିଲେ ମଧ୍ୟ ସେ ସ୍ୱାମୀଙ୍କ ପାଇଁ ଚିନ୍ତିତ ବୋଲି ସବୁବେଳେ ଅଭିନୟ କରୁଥିଲେ। ପ୍ୟାରିସ୍‌ରୁ ହଂକଂରେ ଥିଲା ବେଳେ ସେ ଏକ ସାମ୍ବାଦିକ ସମ୍ମିଳନୀ ଡକାଇଥିଲେ। ସେ ଏଥିରେ ସସମ୍ମାନେ ଇଣ୍ଡୋନେସିଆ ଫେରିବା ପାଇଁ ଇଚ୍ଛା ପ୍ରକାଶ କରିଥିଲେ। କିନ୍ତୁ ଇଣ୍ଡୋନେସିଆ ସରକାରଙ୍କ ଠାରୁ ଜବାବ ମିଳିଲା, ସେ ଯଦି ତାଙ୍କର ସମସ୍ତ ସମ୍ପତ୍ତି ଫେରାଇ ଦିଅନ୍ତି, ତାଙ୍କୁ ସ୍ୱାଧୀନ ନାଗରିକ ଭାବେ ହୁଏତ ରହିବାର ଅଧିକାର ମିଳିପାରେ। କାନ୍ତୁ ଏଭଳି ଏକ ସର୍ତ୍ତକୁ ରନ୍ନା ମାନିବାକୁ ପ୍ରସ୍ତୁତ ନଥିଲେ। ତଥାପି ସେ ନିଜ ସ୍ୱାମୀ ସୁକର୍ଣ୍ଣଙ୍କ ପାଇଁ ଅତ୍ୟନ୍ତ ଚିନ୍ତିତ ବୋଲି ପୂର୍ବରୁ କରିଆସୁଥିବା ଅଭିନୟ ଜାରି ରଖିଲେ।

ଜୀବନର ଅସରନ୍ତି ଏକଲା ଚଲାପଥରେ ସେ ଭେଟିଲେ ଜାପାନୀ ଫିଲ୍ମଷ୍ଟାର ମାସାହିକୋ ସୁଗାବାଙ୍କୁ। ଉଭୟେ ପରସ୍ପରକୁ ଭଲପାଇ ବସିଲେ। ଏ ସମ୍ବାଦ ସୁକର୍ଣ୍ଣୋଙ୍କୁ ଖୁବ୍ ପୀଡ଼ା ଦେଇଥିଲା। ସୁଗାବାଙ୍କୁ ବିବାହ କରିବା ସମ୍ବାଦ ଟୋକିଓର ଚାରିଆଡ଼େ ପ୍ରଚାରିତ ହୋଇଗଲା। ବିବାହ ଏକପ୍ରକାର ସ୍ଥିର

ହୋଇଗଲା । ମାତ୍ର ଗୋଟିଏ ବଡ଼ଧରଣର ଅସୁବିଧା ଏତିକି ବେଳେ ଦେଖାଦେଲା । ଇଣ୍ଡୋନେସିଆର ପ୍ରଫେସର ଇବ୍ରାହିମ ହୁସେନ ଆପତ୍ତି କଲେ, ସୁକର୍ଣ୍ଣୋଙ୍କୁ ବିବାହ କଲାପରେ ରତ୍ନା ଇସଲାମ ଧର୍ମରେ ଦିକ୍ଷିତ ହୋଇସାରିଛନ୍ତି । ମୁସଲମାନ ହୋଇଥିବା ଅବସ୍ଥାରେ ସେ ସୁକର୍ଣ୍ଣୋଙ୍କୁ ବିଧିବଦ୍ଧ ଭାବରେ ଛାଡ଼ପତ୍ର ନଦେବା ପର୍ଯ୍ୟନ୍ତ ଅନ୍ୟ ଜଣକୁ ବିବାହ କରିପାରିବେ ନାହିଁ । ଏଥିରେ ରତ୍ନାଦେବୀ ଅବଶ୍ୟ ଭାଙ୍ଗି ପଡ଼ିଥିଲେ । କାନ୍ତୁ ତାଙ୍କ ପ୍ରେମର ଦରବାରରେ କେବେ ଭଙ୍ଗା ପଡ଼ିନଥିଲା ।

ଏଇ ସମୟରେ ସୁକର୍ଣ୍ଣୋ ଖୁବ୍ ଅସୁସ୍ଥ ହୋଇପଡ଼ିଲେ । ମୃତ୍ୟୁଶଯ୍ୟାରେ ଥାଇ ସେ ଶେଷଥର ପାଇଁ ରତ୍ନା ଏବଂ ତାଙ୍କ କନ୍ୟାକୁ ଦେଖିବାକୁ ଇଚ୍ଛା ପ୍ରକାଶ କଲେ । ଏଥିପାଇଁ ଇଣ୍ଡୋନେସିଆ ସରକାର ରତ୍ନାଦେବୀଙ୍କୁ ଅନୁମତି ଦେଇଥିଲେ । ଉଭୟ ପତ୍ନୀ ଏବଂ କନ୍ୟାଙ୍କ ଉପସ୍ଥିତିରେ ସୁକର୍ଣ୍ଣୋ ୧୯୭୦ ଜୁନ୍ ୨୧ରେ ପ୍ରାଣତ୍ୟାଗ କଲେ । ପରେ ପରେ ରତ୍ନାଦେବୀ, କନ୍ୟା ସହିତ ଜାପାନ ଫେରି ଆସିଲେ । ଆସିଲାବେଳେ ସେ ନିଜର ସମସ୍ତ ମୂଲ୍ୟବାନ ଧନରତ୍ନ ନେଇ ଆସିଥିଲେ । ଏଥର କିନ୍ତୁ ପ୍ରେମିକ ସୁଗାବାଙ୍କ ବାହୁପାଶରେ କଟାଇବା ପାବଦେବୀଙ୍କ ପାଇଁ ଆଉ କୌଣସି ବାଧା ରହିଲା ନାହିଁ । ନିଜ ନାମରେ ଥିବା ଗଚ୍ଛିତ ସମ୍ପଦ ଏବଂ ସୁଗାବାଙ୍କ ଆକର୍ଷଣ, ରତ୍ନାଦେବୀଙ୍କୁ ନୂଆ ଜୀବନଯାପନ ପାଇଁ ଯଥେଷ୍ଟ ଖୋରାକ ଯୋଗାଇଥିଲା । ସେ ଘୁରି ବୁଲିଲେ ଟୋକିଓରୁ ପ୍ୟାରିସ୍.... ଆଉ ପ୍ୟାରିସ୍‌ରୁ ହଂକଂ..... ।



# ପ୍ରେମର ପାଶରେ ଭୁଟ୍ଟୋ

'ଭୁଟ୍ଟୋ' ନାଁଟି ସହିତ ପ୍ରାୟ ସମସ୍ତେ ଭଣାଅଧିକେ ପରିଚିତ। ଦେଶର ନାମ ପାକିସ୍ତାନ। ଏଠି ପ୍ରେମ, ପ୍ରତାରଣା ଏବଂ ପ୍ରଜାତନ୍ତ୍ର ଗୋଟିଏ ରେଖାରେ ବନ୍ଧା। ଗୋଟିଏ ପରେ ଗୋଟିଏ ଶାସନ ମୁଖ୍ୟଙ୍କୁ ଏଠି ହତ୍ୟା କରାଯିବାଟା ଯେମିତି ଏକ କଳାକୌଶଳ। ଏଠାକାର ଏଇ ମୁଖ୍ୟମାନଙ୍କ ଶାସନ ପଛପଟେ ଥିବା ଅଦୃଶ୍ୟ ନାୟିକାଟିର କାଉଁରୀକାଠି ବିଷୟରେ ନ ଜାଣିଲେ ଅନ୍ୟାୟ ହେବ। ଏଇ ଘଟଣାଟି ଗତ ଏପ୍ରିଲ ମାସରେ ଉନ୍ମୋଚିତ ହୋଇଥିବା ବହୁଚର୍ଚ୍ଚିତ ପୁସ୍ତକ 'ମାଇଁ ଫିଉଡାଲ ଲର୍ଡ'ରେ ବର୍ଣ୍ଣନା କରିଛନ୍ତି ତେହମିନା ଦୁରାନୀ। ଏଠାରେ ସ୍ମରଣୀୟ, ଦୁରାନୀ ହେଉଛନ୍ତି ପାକିସ୍ତାନର ପୂର୍ବତନ ପ୍ରଧାନମନ୍ତ୍ରୀ ଭୁଟ୍ଟୋଙ୍କର ଏକଦା ଘନିଷ୍ଠ ରାଜନୈତିକ ସହଯୋଗୀ ଗୋଲାମ ମୁସ୍ତାଫା ଖାଁଙ୍କର ଷଷ୍ଠ ପତ୍ନୀ।

> ପୃଥିବୀର ରାଜନୈତିକ ଇତିହାସର ପୃଷ୍ଠା ଓଲଟାଇଲେ ଦୁଇଟି ଜିନିଷ ଦେଖିବାକୁ ମିଳେ। ଏଇ ଦୁଇଟି ହେଲା 'ପ୍ରେମ' ଆଉ 'ନାରୀ'। ଏଇ ଦୁଇଟି ପାଇଁ ବହୁ ମାନ୍ୟଗଣ୍ୟ ବ୍ୟକ୍ତି ତଳକୁ ଖସି ଆସିଛନ୍ତି। ଶାସନ ଦଣ୍ଡ ଦୋହଲି ଯାଇଛି। ଦେଶ କେଉଁଠି ଧ୍ୱଂସ ଆଡ଼କୁ ଯାଇଛି ତ କେଉଁଠି ଅରାଜକତା ବ୍ୟାପି ଯାଇଛି। ପ୍ରେମ ଆଉ ପତ୍ନୀର ପଣତ କାନିରେ ଦୁର୍ବଳ ହୋଇ ଉଠିଛନ୍ତି ବହୁ ଶକ୍ତିଶାଳୀ ରାଷ୍ଟ୍ରର ପ୍ରଧାନମନ୍ତ୍ରୀ ଏବଂ ରାଷ୍ଟ୍ରପତି।

ପୁସ୍ତକଟିର ସମସ୍ତ ତଥ୍ୟ ଗୁଲାମ ମୁସ୍ତାଫାଙ୍କର ଅଭିଜ୍ଞତା ପ୍ରସୂତ। ପରସ୍ପରକୁ ଡାଇଭର୍ସ କରିଛନ୍ତି। ୧୯୮୯ରେ ଦୁରାନୀ ତାଙ୍କୁ ଛାଡ଼ପତ୍ର ଦେଇଛନ୍ତି। ଦୀର୍ଘ ୧୫ ବର୍ଷର ବୈବାହିକ ଜୀବନର ପରିସମାପ୍ତି ଘଟିଛି। କାରଣ ହେଉଛି ଯା ଭିତରେ ଗୁଲାମ, ଦୁରାନୀଙ୍କ ସାନଭଉଣୀ 'ଆଦିଲା'ର ପ୍ରେମରେ ବେଶ୍ କିଛିଟା ମସ୍‌ଗୁଲ ହୋଇ ଉଠିଥିଲେ। ଖାଲି ସେତିକି ନୁହେଁ, ୫୦ ବର୍ଷରୁ ଊର୍ଦ୍ଧ୍ୱ ବୟସ୍କ ପଞ୍ଜାବର ପୂର୍ବତନ ଗଭର୍ଣ୍ଣର ଏବଂ ଚିଫ୍ ମିନିଷ୍ଟର ଗୁଲାମ ମୁସ୍ତାଫା କେଇବର୍ଷ ତଳେ ପୁଣି ଜଣେ ୨୦ ବର୍ଷ ବୟସ୍କା ସୁନ୍ଦରୀ ତରୁଣୀକୁ ବିବାହ କରିଥିଲେ।

ସତ କହିବାକୁ ଗଲେ ଏଇ ବିଚିତ୍ର ଦେଶରେ ପ୍ରେମ, ପତ୍ନୀ ବେଳେ ବେଳେ ଶାସନ କଳରେ ନୂତନ ମୋଡ଼ ସୃଷ୍ଟି କରିଥାନ୍ତି । ଏଥର ପୂର୍ବତନ ପ୍ରଧାନମନ୍ତ୍ରୀ ସ୍ୱର୍ଗତଃ ଭୁଟ୍ଟୋଙ୍କ ଉପାଖ୍ୟାନ ଭିତରକୁ ଆସିବା । ଭୁଟ୍ଟୋ ବିବାହ କରିଥିଲେ ମଧ୍ୟ ତାଙ୍କର ସମ୍ପର୍କ ଗଢ଼ିଉଠିଥିଲା ଅନ୍ୟଜଣେ ବିବାହିତା ମହିଳାଙ୍କ ସହିତ । ତାଙ୍କ ନାମ ହସନା ଶେଖ୍ । **ହସନାଙ୍କ ସାନ୍ନିଧ୍ୟ ଲାଭ ପାଇଁ କୁଲିଫିକର ପାଗଳ ହୋଇ ଉଠୁଥିଲେ । ଏଥିପାଇଁ ତାଙ୍କୁ ବହୁ ଅପମାନ, ଲାଞ୍ଛନା ସହିବାକୁ ପଡ଼ିଛି । ତଥାପି ଭୁଟ୍ଟୋ ଥିଲେ ହସନା ପ୍ରେମରେ ମସ୍‌ଗୁଲ । କ୍ଷମତାରୁ ଭୁଟ୍ଟୋ ଯିବାପରେ ଘଟଣାଟି ପାକିସ୍ଥାନରେ ବେଶ୍ ଚର୍ଚ୍ଚାର ବିଷୟ ହୋଇପଡ଼ିଥିଲା ।**

ଭୁଟ୍ଟୋ ଏବଂ ହସନାଙ୍କ ସମ୍ପର୍କକୁ ଆହୁରି ଗାଢ଼ତର କରିଥିଲେ ଗୁଲାମ ମୁସ୍ତାଫା । ଭୁଟ୍ଟୋ ପରିବାର ସହିତ ଓତଃପ୍ରୋତ ଭାବରେ ଜଡ଼ିତ ଥିଲେ ଗୁଲାମ ମୁସ୍ତାଫା । ଏଥିପାଇଁ ୧୯୭୭ରେ ଜିଆ-ଉଲ୍-ହକ୍‌ଙ୍କ ମିଲିଟାରୀ ଶାସନ ବେଳେ ତାଙ୍କୁ ଦେଶ ଛାଡ଼ିବାକୁ ପଡ଼ିଥିଲା । ଦୋଷ ହେଲା, ସେ ବେନଜିରଙ୍କ ଭାଇ ଶାହାନାଜ ଭୁଟ୍ଟୋଙ୍କ ସହିତ ସମ୍ପର୍କ ରଖିଥିଲେ ଏବଂ ତାହା ପୁଣି ଇଉରୋପରେ । ଗୁଲାମଙ୍କ ପାଇଁ କୁଲିଫିକରଙ୍କ ଜୀବନ କିଛି ସମୟ ପାଇଁ ରଙ୍ଗୀନ ହୋଇ ଉଠିଥିଲା । ଭୁଟ୍ଟୋ ହସନାଙ୍କ ପ୍ରେମ ପାଇଁ ପାଗଳ ହୋଇ ଉଠୁଥିଲେ । ମାତ୍ର ହସନା ତାଙ୍କୁ ପ୍ରଥମେ ଆଦୌ ଗ୍ରହଣ କରିପାରି ନଥିଲେ ।

ଭୁଟ୍ଟୋ ଯେତେବେଳେ ଜେନେରାଲ ଆୟୁବ୍ ଖାଁଙ୍କ ଶାସନ କାଳରେ ଜଣେ ମନ୍ତ୍ରୀ ଥିଲେ, ସେତିକି ବେଳେ ଏଇ ଘଟଣାର ସୂତ୍ରପାତ । ହସନା କିନ୍ତୁ ସେତେବେଳେ ବିବାହିତା ଦୁଇଟି ପିଲାର ମା' ଥିଲେ । ସେ ବିବାହ କରିଥିଲେ ଜଣେ ତୀବ୍ର ଜାତୀୟବାଦୀ ବଙ୍ଗାଳି ଓକିଲ ଅବ୍ଦୁଲ ଆହାଦଙ୍କୁ । ଅବ୍ଦୁଲ ନିଜ ବ୍ୟବସାୟର ଫାଇଦା ପାଇଁ ଭୁଟ୍ଟୋଙ୍କୁ ଘରକୁ ଡାକି ନିଜର ସୁନ୍ଦରୀ ସ୍ତ୍ରୀ ସହିତ ପରିଚିତ କରାଇ ଦେଇଥିଲେ । ଏଇଠି ଭୁଟ୍ଟୋ ହ୍‌ସନାକୁ ଦେଖି ଅତି ଦୁର୍ବଳ ହୋଇ ପଡ଼ିଥିଲେ । ୧୯୭୧ରେ ଅବ୍ଦୁଲାଙ୍କୁ ହତ୍ୟା କରାଯାଇଥିଲା । ପରେ ପରେ ଭୁଟ୍ଟୋ ହସନାଙ୍କୁ ରାଜନୀତିରେ ଯୋଗଦେବା ପାଇଁ ପ୍ରବର୍ତ୍ତାଇ ଥିଲେ । ମାତ୍ର ହସନା ସେ ସବୁକୁ ବେଶୀ ଘୃଣା କରୁଥିଲେ । ଘୃଣା କରୁଥିଲେ ସେ ଭୁଟ୍ଟୋଙ୍କୁ ।

କିନ୍ତୁ ଭୁଟ୍ଟୋ ତାଙ୍କର ସାନ୍ନିଧ୍ୟ ପାଇଁ ପାଗଳ ହୋଇ ଉଠୁଥିଲେ। ଏଥିପାଇଁ ମଞ୍ଚ ପ୍ରସ୍ତୁତ କରୁଥିଲେ ଗୁଲାମ ମୁସ୍ତାଫା। ହସନାଙ୍କୁ ବ୍ୟବହାର କରିବାକୁ।

ଗୁଲାମ ଭୁଟ୍ଟୋଙ୍କୁ ହସନାଙ୍କ ଭବନରେ ଛାଡ଼ିଦେଇ ଆସୁଥିଲେ। ହସନାଙ୍କ ପାଖରେ ଭୁଟ୍ଟୋ ଖୁବ୍ ଦୁର୍ବଳ ହୋଇ ପଡୁଥିଲେ। ବେଳେ ବେଳେ ଉଭୟଙ୍କ ମଧ୍ୟରେ ଝଗଡ଼ା ଲାଗିଯାଉଥିଲା। ଏମିତି ଏକ ଘଟଣା ଦିନେ ଘଟିଥିଲା। ହସନା ଭୁଟ୍ଟୋଙ୍କୁ ତୁରନ୍ତ ବାହାରି ଯିବାପାଇଁ କହିଥିଲେ। କିନ୍ତୁ ଭୁଟ୍ଟୋ ଏଥିରେ ବିଳମ୍ବ କରିବାରୁ ହସନା ତାଙ୍କୁ ପେଲିକରି ଦରଜା ପାଖକୁ ନେଇଯାଇଥିଲେ। ଦରଜାକୁ ବନ୍ଦ କଲାବେଳେ ଦରଜାଟି ଭୁଟ୍ଟୋଙ୍କ ମୁହଁରେ ଏଭଳି ପିଟିହୋଇ ଯାଇଥିଲା ଯେ ଜୀବନସାରା ଭୁଟ୍ଟୋ ଘଟଣାଟି ଭୁଲି ନଥିଲେ। କିନ୍ତୁ ବିଚରା ଭୁଟ୍ଟୋ ଏସବୁକୁ ଆଦୌ ହୃଦୟରେ ସ୍ଥାନ ଦେଇନଥିଲେ। ତାଙ୍କ ପାଇଁ ହସନା ସବୁ ଚାଲି ଚାଲି ଫେରିବାକୁ ପଡ଼ିଥିଲା।

ଭୁଟ୍ଟୋ ଯେତେବେଳେ କ୍ଷମତାକୁ ଫେରିଲେ, ଏଇ ନାରୀଟି ନିଜର ଆସ୍ଥାନ ଜମାଇ ବସିଲେ ପାକିସ୍ଥାନ ରାଜନୀତିରେ। ଭୁଟ୍ଟୋଙ୍କୁ ହାତ କରି ସେ ବହୁ କାମ କରାଇ ନେଉଥିଲେ, ଏପରିକି ଯେଉଁ କାର୍ଯ୍ୟ ଭୁଟ୍ଟୋ ନ କରିବା କଥା। ଭୁଟ୍ଟୋଙ୍କର ଗୋଟିଏ ହାତରେ ଥିଲା ସିଗାରେଟ। ଅନ୍ୟ ହାତଟି ସଂଚାଳିତ ହେଉଥିଲା ହସନାଙ୍କ ଅଲୁଳାୟିତ କେଶଗୁଚ୍ଛ ଉପରେ। ହସନା ଚାହୁଁଥିଲେ ଉଭୟଙ୍କର ସମ୍ପର୍କକୁ ଆଇନ ସମ୍ମତ କରିବା ପାଇଁ। କାରଣ ସେତେବେଳକୁ ହସନାଙ୍କ ଝିଅର ବିବାହ ବୟସ ହୋଇଯାଇଥିଲା। ମାତ୍ର ଭୁଟ୍ଟୋ ଥିଲେ ସୁରା ଆଉ ସାକୀ ନିଶାରେ ମସ୍‌ଗୁଲ। ସିଗାରେଟର ଧୂଆଁ ଭିତରେ ଭୁଟ୍ଟୋ ଖୋଜୁଥିଲେ ନୂଆ ଜୀବନ..... ଉପଭୋଗର ସାମ୍ରାଜ୍ୟ..... ଜୀବନର ମାଦକତା। ସେତେବେଳକୁ ହସନାଙ୍କ ମୁହଁରେ ଜମିଆସିଥିଲା ବୁନ୍ଦା ବୁନ୍ଦା ଝାଳ....।





# ଅଭିନେତ୍ରୀରୁ ରାଷ୍ଟ୍ରପତିଙ୍କ ପତ୍ନୀ (ଚୀନ)

'ଜିଆଙ୍ଗ କୁଇଙ୍ଗ' - ଚୀନ ଦେଶର ଏକ ଇତିହାସ। ଏଇ ନାରୀ ଜଣକ କେବେ ସ୍ୱପ୍ନରେ ବି କଳ୍ପନା କରିନଥିଲେ ଯେ ସେ ମାଓ-ସେ-ତୁଙ୍ଗଙ୍କ ସହଧର୍ମିଣୀ ହେବେ ବୋଲି। ଜିଆଙ୍ଗ ୧୯୧୪ରେ ଚୀନର ସାନତୁଙ୍ଗ ପ୍ରଦେଶର ଏକ ଅତି ସାଧାରଣ ପରିବାରରେ ଜନ୍ମଗ୍ରହଣ କରିଥିଲେ। ଜନ୍ମ ବେଳକୁ ତାଙ୍କ ବାପା ମା'ଙ୍କ ବୟସ ୬୦/୪୦ ବର୍ଷ ହୋଇଥିଲା ଏବଂ ସେମାନଙ୍କର ୧୨ଟି ସନ୍ତାନ ଥିଲେ। ପିତାଙ୍କ ମୃତ୍ୟୁ ପରେ ଜିଆଙ୍ଗଙ୍କ ମା' କୁଲିକାମ କରି ୧୨ଟି ସନ୍ତାନକୁ ପାଳିବା ଅସମ୍ଭବ ହେବାରୁ ସେ ସିନାନ୍ ଚାଲିଆସିଥିଲେ। ଏହି ସହରରେ ଜିଆଙ୍ଗ ଗୋଟିଏ ଥିଏଟର କମ୍ପାନୀରେ ନାମ ଲେଖାଇଥିଲେ। ତାହାର ନାମ "ସାନତୁଙ୍ଗ ପ୍ରୋଭିନସିଆଲ ଏକ୍ସପେରିମେଣ୍ଟାଲ ଆର୍ଟ ଥିଏଟର।" ଏହି ଅନୁଷ୍ଠାନରୁ ଜିଆଙ୍ଗ ନାଟ ଏବଂ ସଙ୍ଗୀତ ବିଷୟରେ ଶିକ୍ଷାଲାଭ କରୁଥିଲେ। ଏହି ଥିଏଟର କମ୍ପାନୀ ସହ ସେ ବେଜିଂ ଆସିଥିଲେ। ମାତ୍ର ଦୁଃଖର କଥା, ଜିଆଙ୍ଗ ଏହି କମ୍ପାନୀରେ ନା' ନାଟ୍ୟକାର ନା' ଅଭିନେତ୍ରୀ କୌଣସିଟିରେ ସଫଳ ହୋଇପାରିଲେ ନାହିଁ।

> ବିଶ୍ୱ-ଇତିହାସରେ ଏମିତି ଅନେକ ନାରୀ ଆସିଛନ୍ତି, ଯେଉଁମାନଙ୍କ ଜନ୍ମ-ଜାତକ ଯେତେ ପାପପଙ୍କିଳ ହେଉନା କାହିଁକି, ସେମାନେ ରାଜନୀତିର ଚଢ଼ା ଉତୁରାରେ ପ୍ରଥମ ସ୍ଥାନ ଅଧିକାର କରିଛନ୍ତି। ଯୌବନର ଆକର୍ଷଣ, ରୂପର ଛଟା, ଲୋଭନୀୟ ଚାହାଣୀରେ ଏମାନେ ଦେଶ ବିଦେଶର ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କୁ ବଶୀଭୂତ କରିଛନ୍ତି। ସେମାନଙ୍କ କାମନାର ନାଗଫାଶରୁ ମୁକ୍ତି ପାଇନାହାନ୍ତି ଦେଶର ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ, ରାଜା ଏବଂ ସମ୍ଭ୍ରାନ୍ତ ବର୍ଗ। ପ୍ରେମର ଖିଆଲି ଚଷମା ପିନ୍ଧି ଏହି ନାରୀମାନେ ସମୟକ୍ରମେ ସାଜିଛନ୍ତି ଦେଶର 'ଫାଷ୍ଟଲେଡି'..... ପ୍ରଥମ ନାରୀ.... ପ୍ରଥମ ନାଗରିକ। 'ଜିଆଙ୍ଗ କୁଇଙ୍ଗ' ସିଏବି ଅତି ସାଧାରଣ ପରିବାରରେ ଜନ୍ମଗ୍ରହଣ କରିଥିଲେ ମଧ୍ୟ, ଚୀନର ନିର୍ମାତା ପ୍ରବାଦ ପୁରୁଷ ମାଓ-ସେ-ତୁଙ୍ଗଙ୍କ ପତ୍ନୀ ହୋଇ-ପାରିଥିଲେ।

ଧନୀ ହେବାର ଅଦମ୍ୟ ଆଶା କିଆଙ୍ଗଙ୍କୁ ଅନ୍ଧ କରିଥିଲା। ସେ କଣେ ଫିଲ୍ମ ନିର୍ଦ୍ଦେଶକ ତାଙ୍ଗ-ନା'ଙ୍କୁ ବିବାହ କରିଥିଲେ। ତାଙ୍କର ଖାମଖିଆଲି ସ୍ୱଭାବ ଯୋଗୁ ତାଙ୍ଗ-ନା ବାଧ୍ୟ ହୋଇ କିଆଙ୍ଗଙ୍କୁ ଡାଇଭର୍ସ କରିଥିଲେ। ପରେ ପରେ କିଆଙ୍ଗ ବାମପନ୍ଥୀ ଲେଖକମାନଙ୍କ ସମ୍ପର୍କରେ ଆସି ଚାରିବର୍ଷ କାଳ ସାଙ୍ଘାଇରେ ରହିଥିଲେ। ତତ୍କାଳୀନ ଚୀନ କମ୍ୟୁନିଷ୍ଟ ପାର୍ଟିର ନେତା ଚୋଉୟାଙ୍ଗ ସାଂସ୍କୃତିକ ବିପ୍ଳବକୁ ସାକାର ରୂପଦେବା ଦିଗରେ କିଆଙ୍ଗଙ୍କୁ ବ୍ୟବହାର କରିଥିଲେ। ଏହି ସମୟରେ କିଆଙ୍ଗ ମଧ୍ୟ କିଛି ସମୟ ପାଇଁ ଗୋଟିଏ ନାଇଟ୍ ସ୍କୁଲର ଶିକ୍ଷୟିତ୍ରୀ ଥିଲେ। କିଆଙ୍ଗ ରୁଚିରେ ଥିଲେ ସମ୍ଭ୍ରାନ୍ତବର୍ଗର କିନ୍ତୁ ତାଙ୍କ ପାଖରେ ଅର୍ଥ ନଥିଲା। ତେଣୁ ସେ ବଡ଼ ବଡ଼ ହୋଟେଲମାନଙ୍କୁ ଯାଇ କେବଳ ଅଳ୍ପ ଦାମ୍‌ର ଖାଦ୍ୟ ଖାଉଥିଲେ।

ଥିଏଟର ଅଭିନେତ୍ରୀ ଭାବରେ କିଆଙ୍ଗଙ୍କ ଖ୍ୟାତି ବଢ଼ିବାରେ ଲାଗିଲା। ସେ ସାଙ୍ଘାଇର ଫିଲ୍ମ ଇଣ୍ଡଷ୍ଟ୍ରିରେ ପାଦଦେଲେ। ସେତେବେଳେ ତାଙ୍କୁ ବହୁ ପ୍ରତିଯୋଗିତାର ସମ୍ମୁଖୀନ ହେବାକୁ ପଡ଼ିଥିଲା। ୧୯୩୬ରେ ତାଙ୍କ ଜୀବନରେ ଏକ ବିରାଟ ପରିବର୍ତ୍ତନ ଆସିଲା। ସେ 'ବ୍ଲଡ୍ ଅନ୍ ଉଲଫ୍ ମାଉଣ୍ଟେନ୍' ଫିଲ୍ମରେ ନାୟିକା ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ। ଏହି ଫିଲ୍ମର କାହାଣୀ ହେଉଛି ଜାପାନୀମାନଙ୍କର ଚୀନ ଆକ୍ରମଣ ବିଷୟରେ। ଏହି ଫିଲ୍ମ ହିଁ ତାଙ୍କୁ କଣେ ସଫଳ ଅଭିନେତ୍ରୀର ସୁଯୋଗ ଦେଲା। ସମସ୍ତେ ତାଙ୍କ ନା ଜାଣିଲେ। ଏହା ପୂର୍ବରୁ ତାଙ୍କର ନାମ ଥିଲା 'ଲାନ୍‌ପିଙ୍ଗ୍'। ଏଇଠୁ ସେ ନାମ ବଦଳିଯାଇ ରହିଲା 'କିଆଙ୍ଗ କୁଇଙ୍ଗ'।

ସମଗ୍ର ଚୀନରେ କିଆଙ୍ଗ କଣେ ସଫଳ ଅଭିନେତ୍ରୀ ଭାବେ ଚର୍ଚ୍ଚିତ ହେଲେ। ଏ ଖବର ମାଓଙ୍କ କାନରେ ପହଞ୍ଚିଲା। ୧୯୩୯ରେ ଜାପାନୀ ସୈନ୍ୟ ସାଙ୍ଘାଇ ଅଧିକାର କରିଲେ। କିଆଙ୍ଗ କୌଶଳରେ ୟେନାନ୍ ଖସିଗଲେ। ଏଥିପାଇଁ ତାଙ୍କୁ ଟ୍ରକ, ଘୋଡ଼ା ଏବଂ ଶେଷରେ ପାଦରେ ଚାଲି ଚାଲି ମଧ୍ୟ ୟେନାନ୍ ଯିବାକୁ ପଡ଼ିଥିଲା। ଏଇ ସମୟରେ ମାଓଙ୍କ ନେତୃତ୍ୱରେ କମ୍ୟୁନିଷ୍ଟ ରେଡ୍ ଆର୍ମି ଏଠାରେ ପହଞ୍ଚିଥାନ୍ତି। କିଆଙ୍ଗ ଭଲଭାବେ ସର୍ବତ୍ର ଜଣାଶୁଣା ହୋଇଥିବାରୁ, ମାଓଙ୍କ କାନରେ ଏହି କମ୍ୟୁନିଷ୍ଟ ସ୍ୱେଚ୍ଛାସେବିକାଙ୍କ ଖବର ପହଞ୍ଚିଲା। ମାଓ

ନିକେ ଜିଆଙ୍ଗଙ୍କୁ ଖୋଜି ବାହାରିଲେ। ମାର୍କସିଷ୍ଟ-ଲେନିନିଷ୍ଟ ଇନଷ୍ଟିଚ୍ୟୁଟରେ ଭାଷଣ ଶୁଣିବା ପାଇଁ ଜିଆଙ୍ଗଙ୍କୁ ସେ ଏକ ଟିକଟ ଦେଇ ଆମନ୍ତ୍ରଣ ଜଣାଇଲେ। ଜିଆଙ୍ଗ ପ୍ରଥମେ ସଂକୋଚରେ ବୁଡ଼ିଯାଇଥିଲେ ତଥାପି ଟିକେଟଟି ଗ୍ରହଣ କରିଥିଲେ।

ଏଇଠୁ ଆରମ୍ଭ ହୋଇଥିଲା ଜିଆଙ୍ଗଙ୍କ ଜୀବନର ବିକାଶ ପର୍ବ। ତାଙ୍କର ସ୍ୱପ୍ନ ସାକାର ହେବାର ସମୟ ଆସିଯାଇଥିଲା। ନିଜର ନୟନ ମନୋଲୋଭା ରୂପ ଏବଂ ଆକର୍ଷଣୀୟ ଚାହାଣୀରେ ଜିଆଙ୍ଗ, ମାଓଙ୍କୁ ଅତି ଶୀଘ୍ର କାବୁ କରିପାରିଥିଲେ। ତିନୋଟି ବିବାହ କରିଥିବା ମାଓ ଏଇ ନବୀନ ତରୁଣୀଙ୍କ ପ୍ରେମରେ ଜୁଡୁବୁଡୁ ଥିଲେ। ସେତେବେଳକୁ ମାଓଙ୍କ ବୟସ ୪୬ ଏବଂ ଜିଆଙ୍ଗଙ୍କ ବୟସ ୨୫ ହୋଇଥିଲା। ଜିଆଙ୍ଗ ପ୍ରଥମେ ମାଓଙ୍କ ସେକ୍ରେଟାରୀ ଭାବେ ନିଯୁକ୍ତି ପାଇଥିଲେ। ଉଭୟଙ୍କ ସମ୍ପର୍କରେ ଚର୍ଚ୍ଚା ସେତେବେଳେ ସମଗ୍ର ଚୀନ ତଥା ରେଡ୍ ଆର୍ମିରେ ଚହଳ ସୃଷ୍ଟି କରିଥିଲା। ଏଥିପାଇଁ ତାଙ୍କର ତୃତୀୟ ପତ୍ନୀ ହିଉ-ଜେ-ସେନ୍ ତାଙ୍କୁ ଛାଡ଼ପତ୍ର ଦେଇଥିଲେ। ମାଓ ୪ର୍ଥ ପତ୍ନୀ ଭାବରେ ଜିଆଙ୍ଗଙ୍କୁ ଗ୍ରହଣ କଲେ।

ଜିଆଙ୍ଗ ମଧ୍ୟ ୨ଟି କନ୍ୟା ସନ୍ତାନର ଜନନୀ ହୋଇଥିଲେ। ମାଓଙ୍କର ସାରା ଜୀବନ ସଙ୍ଘର୍ଷ ଭିତରେ କଟିଥିଲା। ୧୯୪୯ରେ ସେ ଚୀନ ପ୍ରଜାତନ୍ତ୍ରର ପ୍ରତିଷ୍ଠା କରିଥିଲେ। ମାଓ ନିଜ ସ୍ତ୍ରୀଙ୍କ ପାଇଁ ଏକ ସ୍ୱତନ୍ତ୍ର ମହଲ ତିଆରି କରିଥିଲେ। ସେ ଚାହୁଁଥିଲେ ଜିଆଙ୍ଗ ତାଙ୍କର ଦୈନନ୍ଦିନ ଘଟଣା ଏବଂ ପାର୍ଟି କାର୍ଯ୍ୟରେ ହସ୍ତକ୍ଷେପ ନକରନ୍ତୁ। ଜିଆଙ୍ଗ ମଧ୍ୟ ଏଥିପ୍ରତି ସଚେତନ ନଥିଲେ। ମାଓ ସର୍ବହରା ବା ସନ୍ୟାସୀର ଜୀବନ ଯାପନ କରୁଥିବା ବେଳେ ଜିଆଙ୍ଗ ବିଳାସବ୍ୟସନରେ ବୁଡ଼ି ରହୁଥିଲେ। ମାଓ ଚିରା ଏବଂ ମରାମତ ହୋଇଥିବା ସାର୍ଟକୁ ବାରମ୍ବାର ପିନ୍ଧୁଥିଲେ। ବିଦେଶୀ ଅତିଥିମାନଙ୍କୁ ସ୍ୱାଗତ କଲାବେଳେ ଗୋଟିଏ ପୁରୁଣା ହେଭିକୋର୍ଟ ସେ ପରିଧାନ କରୁଥିଲେ। ୧୯୫୮ରେ ଚୀନର ଆର୍ଥିକ ସଙ୍କଟ ପଡ଼ିଥିବା ବେଳେ ମାଓ ମାଂସ, ଚା ପାନ ଛାଡ଼ି ଦେଇଥିଲେ। ସେ ନିଜର ସୈନ୍ୟମାନଙ୍କୁ ତିନୋଟି ଜିନିଷ (କର୍ତ୍ତବ୍ୟ, ପଠନ ଏବଂ ଅନୁସନ୍ଧାନ ଉପରେ) ବୁଝାଉଥିଲେ। ସାଧାରଣ ଜନତାର ହାରି ଗୁହାରି ସେ ଶୁଣିବାକୁ ସତତ ପ୍ରସ୍ତୁତ ଥିବାବେଳେ ଜିଆଙ୍ଗଙ୍କ ରାଜକୀୟ ଚଳଣି ଶୀର୍ଷ ସ୍ଥାନରେ ପହଂଚିଥିଲା। ଜିଆଙ୍ଗ

ଖାଦ୍ୟ, ପୋଷାକ, ଭୂଷଣ, ଥିଏଟର, ବାସଗୃହ ଉପରେ ଅଧିକ ଗୁରୁତ୍ୱ ଦେଉଥିଲେ।

ଜିଆଙ୍ଗ ପରିଭ୍ରମଣରେ ଯାଉଥିବା ବେଳେ ବିଭିନ୍ନ ସରକାରୀ ଗେଷ୍ଟହାଉସରେ ରହୁଥିଲେ। ସବୁବେଳେ ସେ ଗେଷ୍ଟହାଉସର ଚାଦର, ସ୍କ୍ରୀନ, ବେଡ଼ସିଟ, ପରଦା ଆଦି ନେଇ ନିକର ଅସନ୍ତୋଷ ପ୍ରକାଶ କରୁଥିଲେ। ସେ ମଧ୍ୟ ତାଙ୍କ ଜଗୁଆଳୀମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ ତାଙ୍କ ବାସସ୍ଥାନରୁ ଗୋଟିଏ କିଲୋମିଟର ମଧ୍ୟରେ ଯେପରି କୌଣସି ପ୍ରକାର ମୋଟର, କୁକୁଡ଼ା, କୁକୁର ଆଦିଙ୍କ ଶବ୍ଦ ନଶୁଭେ। ଏଥିପାଇଁ ୨୦ ଜଣ ସୈନିକ ମୂତୟନ ହୋଇଥିଲେ। କମ୍ୟୁନିଷ୍ଟ ପାର୍ଟିର ଚେୟାରମ୍ୟାନ ମାଓଙ୍କ ପତ୍ନୀ ଭାବରେ ସେ ମନଇଚ୍ଛା ସମସ୍ତ ସୁବିଧା ସୁଯୋଗ ହାସଲ କରିଥିଲେ। ଏହା କିନ୍ତୁ ଚୀନର ଜନତା ପସନ୍ଦ କରୁ ନଥିଲେ। ଏପରିକି ମାଓ ମଧ୍ୟ। ତଥାପି ମାଓ ନୀରବ ରହୁଥିଲେ। ଚୀନରେ ନିଷିଦ୍ଧ ଥିବା ଫିଲ୍ମ ଥିଏଟରକୁ ସେ ବ୍ୟକ୍ତିଗତ ଭାବେ ଉପଭୋଗ କରିଚାଲିଥିଲେ।

୧୯୭୬ରେ ମାଓଙ୍କ ମୃତ୍ୟୁପରେ ଜିଆଙ୍ଗ ଚୀନ ପ୍ରଜାତନ୍ତ୍ରର ଶାସନଭାର ଧରିରଖିବାକୁ ଚେଷ୍ଟା କରି ବିଫଳ ହୋଇଥିଲେ। ୧୯୭୬ଠାରୁ ସେ ବନ୍ଦୀ ହେଲେ। ଚୀନର ଯୁବସମ୍ପ୍ରଦାୟ ଯେତେବେଳେ ଜିଆଙ୍ଗଙ୍କ ବିଳାସୀ ଜୀବନ ବିଷୟରେ ଜାଣିଲେ ସେମାନେ ତାଙ୍କ ଅଫିସ, ବାସଗୃହ ଉପରେ ଚଡ଼ାଉ କରିବାକୁ ପଛାଇଲେ ନାହିଁ। ଜିଆଙ୍ଗ ବିରୁଦ୍ଧରେ ସେତେବେଳକୁ ଜନଅସନ୍ତୋଷ ସବଳ ହୋଇ ଉଠିଥିଲା। ଚୀନ ସରକାର ତାଙ୍କୁ କାରାଗାର ମଧ୍ୟରେ ରଖି ନଥିଲେ, ସାଧାରଣ ଜନତା ତାଙ୍କୁ ଶେଷ କରି ଦେଇଥାନ୍ତେ। ସେହି କାରାଗାର ମଧ୍ୟରେ କ୍ୟାନସର ରୋଗରେ ପୀଡ଼ିତ ହୋଇ ଶେଷ ଦିବସକୁ ଅପେକ୍ଷା କଲେ ଜିଆଙ୍ଗ। ସମୟ ଗଡ଼ି ଚାଲିଲା। ଚୀନ ପ୍ରଜାତନ୍ତ୍ର ଏହି ମହିଳାଙ୍କ ନାମକୁ ଭୁଲିଗଲେ। ଆଜି ଚୀନବାସୀଙ୍କ ନିକଟରେ ଏହି ମହିଳା ଜଣକ ସମ୍ପୂର୍ଣ୍ଣ ବିସ୍ମୃତ, କିନ୍ତୁ ଇତିହାସରେ ସେ ଏକ ସଜୀବ ଚରିତ୍ର।



# କାମନାର କୋଣାର୍କରେ ମେରିଲିନ୍

ହଲିଉଡ୍‌ର ନାୟିକା ଇତିହାସରେ ଏକ ଅତୁଳ ନାମ ମେରିଲିନ୍ ମୋନରୋ । ବଞ୍ଚିବା ପାଇଁ ଏଇ ନାୟିକା ଜଣଙ୍କୁ ଜୀବନସାରା ସଂଗ୍ରାମ କରିବାକୁ ପଡ଼ିଛି । ଖ୍ୟାତିର ଚରମ ସୀମାରେ ପହଞ୍ଚିବା ପାଇଁ ତାଙ୍କୁ ଶତଶଯ୍ୟାର ସଙ୍ଗିନୀ ହେବାକୁ ପଡ଼ିଛି । ଖୋରାକ୍ ଏବଂ ଖ୍ୟାତି ପାଇଁ ପୁରୁଷପିଣ୍ଡିତ ସମାଜରେ ଜୀବନର ପ୍ରତିଟି ପାହାଚ ଅତିକ୍ରମ କରିବା ଲାଗି ମେରିଲିନ୍‌ଙ୍କୁ ସମ୍ମୁଖୀନ ହେବାକୁ ପଡ଼ିଛି ଏକ ନିଦାରଣ ବାସ୍ତବତାର । ନାରୀମାଂସଲୋଭୀ କାମୁକମାନଙ୍କ ପାଇଁ ସେ ଖୋଲିଛନ୍ତି ମାଂସର ବିପଣୀ । ଏଇ ମାଂସାଶୀ କୋଣାର୍କର ପଛପଟେ କିନ୍ତୁ ବାହୁନି ଉଠୁଥିଲା ଗୋଟାଏ ବ୍ୟଥିତ ଜନନୀର ହୃଦୟ........ ଗୋଟାଏ ସନ୍ତାପିତ,କାମ୍ୟର ମନ....।

କାମନାର କୋଣାର୍କ ଏବଂ ବାସନାର ବୈକୁଣ୍ଠରେ ଏଇ ନାରୀ ଜଣକ, କିନ୍ତୁ ଖୋଜୁଥିଲେ ଆଉ କିଛି, ଯାହା ଜୀବନର ଶେଷ ପର୍ଯ୍ୟନ୍ତ ତାଙ୍କୁ ମିଳି ନଥିଲା । ଦେହର ଜ୍ୱାଳା ଏବଂ ପ୍ରିୟଜନମାନଙ୍କର ବିଶ୍ୱାସଘାତକତା ତାଙ୍କୁ ଠେଲି ଦେଇଥିଲା ମରଣର ମୁହଁକୁ । କେତୋଟି ସ୍ଲିପିଙ୍ଗ ପିଲ୍‌ର ଆଶ୍ରୟ ନେଇ ସେ ଆଖି ବୁଜିଥିଲେ ସବୁଦିନ ପାଇଁ । ପରଦିନ ହଲିଉଡ୍‌ର ଏଇ ବହୁ ଚର୍ଚ୍ଚିତା ନାୟିକାଙ୍କ ପାଇଁ ଶୋକ ଗୀତ ରଚନା କରାଯାଇ ଥିଲା । ତାଙ୍କର ବେୱାରିସ ଲାସ ଭିତରେ ଦେଖିବାକୁ ମିଳିଥିଲା ହଲିଉଡ୍‌ର ଅନେକ ନାମୀ..... ଦାମୀ ମୁହଁ.... ???

କାମନାର କୋଣାର୍କ ଏବଂ ବାସନାର ବୈକୁଣ୍ଠରେ ଏଇ ନାରୀ ଜଣକ କିନ୍ତୁ ଖୋଜୁଥିଲେ ଆଉ କିଛି, ଯାହା ଜୀବନର ଶେଷ ପର୍ଯ୍ୟନ୍ତ ତାଙ୍କୁ ମିଳି ନଥିଲା । ଦେହର ଜ୍ୱାଳା ଏବଂ ପ୍ରିୟଜନମାନଙ୍କର ବିଶ୍ୱାସଘାତକତା ତାଙ୍କୁ ଠେଲି ଦେଇଥିଲା ମରଣର ମୁହଁକୁ । କେତୋଟି ସ୍ଲିପିଙ୍ଗ ପିଲ୍‌ର ଆଶ୍ରୟ ନେଇ ସେ ଆଖି ବୁଜିଥିଲେ ସବୁଦିନ ପାଇଁ । ପରଦିନ ହଲିଉଡ୍‌ର ଏଇ ବହୁ ଚର୍ଚ୍ଚିତା ନାୟିକାଙ୍କ ପାଇଁ ଶୋକଗୀତ ରଚନା କରାଯାଇଥିଲା । ତାଙ୍କର ବେୱାରିସ୍ ଲାସ୍ ଭିତରେ ଦେଖିବାକୁ ମିଳିଥିଲା ହଲିଉଡ୍‌ର ଅନେକ ନାମୀଦାମୀ ମୁହଁ....।

କାମନାର ଦେବୀ ମେରିଲିନ୍ ମୋନ୍‌ରୋ ୧୯୨୬ ଜୁନ୍ ପହିଲାରେ ଜନ୍ମ ଗ୍ରହଣ କରିଥିଲେ। ତାଙ୍କ ମାତାଙ୍କ ନାମ ଗ୍ଲାଡ଼ିସ୍ ମୋନ୍‌ରୋ ବେକର। କିନ୍ତୁ ପିତାଙ୍କ ସମ୍ପର୍କରେ ଇତିହାସ ନୀରବ। କିନ୍ତୁ ମେରିଲିନ୍ ଭଲଭାବରେ ଜାଣନ୍ତି ଯେ ସେ ଜଣେ ଅବୈଧ ସନ୍ତାନ। ତାଙ୍କ ମା'ଙ୍କ ସହିତ ସଂଲଗ୍ନ ଅନେକ ପତିଙ୍କ ମଧ୍ୟରୁ କେଉଁ ଜଣକ ତାଙ୍କ ପିତା ତାହା କହିବା କଠିନ ବ୍ୟାପାର। ଏକ ଦୟନୀୟ ପରିସ୍ଥିତିରେ ମେରିଲିନ୍‌ଙ୍କ ଜନ୍ମ। ମେରିଲିନ୍‌ଙ୍କ ମା' ଗ୍ଲାଡ଼ିସ୍, ବେକରଙ୍କୁ ବିବାହ କରିଥିଲେ। ମେରିଲିନ୍‌ଙ୍କ ଜନ୍ମ ପୂର୍ବରୁ ଗ୍ଲାଡ଼ିସ୍, ଏଡ୍‌ୱାର୍ଡ ମୋଟେନସନଙ୍କୁ ଦ୍ୱିତୀୟ ସ୍ୱାମୀ ଭାବେ ଗ୍ରହଣ କରିଥିଲେ। କିନ୍ତୁ ଅଳ୍ପଦିନ ମଧ୍ୟରେ ଏକ ମୋଟର ସାଇକେଲ ଦୁର୍ଘଟଣାରେ ମୋଟେନସନଙ୍କ ମୃତ୍ୟୁ ହୋଇଥିଲା। ପରେ ପରେ ଗ୍ଲାଡ଼ିସ୍ ଆଉ ଜଣେ ପୁରୁଷଙ୍କ ସହିତ ସମ୍ପର୍କ ସ୍ଥାପନ କରନ୍ତି। ସେ ହେଉଛନ୍ତି ଫିଲ୍ମ ଇଣ୍ଡଷ୍ଟ୍ରିର ଜଣେ କର୍ମଚାରୀ ସି ଷ୍ଟାନ୍‌ଲି ଗିଫୋର୍ଡ। ପୁଣି କେତେକ କହନ୍ତି ଏକଦା ଗ୍ଲାଡ଼ିସ୍ ମେରିଲିନଙ୍କୁ ଗୋଟିଏ ଛବି ଦେଖାଇ କହିଥିଲେ ତାଙ୍କର ସିକ୍ରେଟ ଫାଦର ହେଉଛନ୍ତି ପ୍ରସିଦ୍ଧ ଫିଲ୍ମଷ୍ଟାର କ୍ଲାର୍କ ଗ୍ୟାବଲ। ଏହି ଅଭିନେତାଙ୍କୁ ଭଲଭାବେ ଅତି ପାଖରୁ ଜାଣିବାକୁ ପାଇଥିଲେ ମେରିଲିନ୍ 'ମିସ୍‌ଫିଟ୍‌ସ' ସିନେମାର ସୁଟିଂ ବେଳେ। ଏହି ଫିଲ୍ମରେ ଗ୍ୟାବଲ ତାଙ୍କ ପ୍ରେମିକ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ।

ମେରିଲିନ୍‌ଙ୍କ ବଂଶ ପରମ୍ପରା ମଧ୍ୟ ତମସାଚ୍ଛନ୍ନ ଥିଲା। ତାଙ୍କ ଜେଜେବାପା ଶେଷ ଜୀବନ ଅନାଥାଶ୍ରମରେ କଟାଇଥିଲେ। ଜେଜେ ମା' ଶେଷରେ ଏକ ମାନସିକ ଚିକିତ୍ସାଳୟରେ ଭର୍ତ୍ତି ହୋଇଥିଲେ। ମେରିଲିନ୍‌ଙ୍କ ମାମୁଁ ଆତ୍ମହତ୍ୟା କରିଥିଲେ ଏବଂ ତାଙ୍କ ମା' ମଧ୍ୟ ଶେଷରେ ମାନସିକ ଚିକିତ୍ସାଳୟର ଆଶ୍ରୟ ନେଇଥିଲେ। ବିଚାରି ଶିଶୁ ମେରିଲିନ୍‌ଙ୍କୁ ଅନାଥାଶ୍ରମରେ ବଢ଼ିବାକୁ ହୋଇଥିଲା। ବିଶେଷ ପଢ଼ାପଢ଼ି କରିବା ତାଙ୍କ ଭାଗ୍ୟରେ ଜୁଟି ନଥିଲା। କିନ୍ତୁ ତାଙ୍କ ଭିତରେ ଏକ ଅସାଧାରଣ ଝୁଙ୍କ୍ ଥିଲା, ସେ କିପରି ଏକ ଅଦ୍ଭୁତ ନାରୀର ଆସନ ଲାଭ କରିବେ। ଏଥିପାଇଁ ସାହାଯ୍ୟ କରିଥିଲା ତାଙ୍କର ପରିପୂର୍ଣ୍ଣ ସୌନ୍ଦର୍ଯ୍ୟ।

ମେରିଲିନ୍‌ଙ୍କ ପରିସ୍ଫୁଟ ତାରୁଣ୍ୟ ସମସ୍ତଙ୍କୁ ମୁଗ୍ଧ କରୁଥିଲା। ଅତି ଅଳ୍ପ ବୟସରୁ ସେ 'ସେକ୍ସକୁଇନ୍' ଆଖ୍ୟା ପାଇଥିଲେ। କେବଳ ସେକ୍ସ ପାଇଁ ତାଙ୍କ ପାଖରେ ଅଜସ୍ର ମଣିଷଙ୍କର ଭିଡ଼ ଜମୁଥିଲା। ପ୍ରାଥମିକ ପର୍ଯ୍ୟାୟରେ ତାଙ୍କୁ

ଯେଉଁ ସହାନୁଭୂତି ଏପରିକି ଚାକିରୀ ମିଳିଥିଲା, ତାହା ଏହି ସେକ୍ସର ବିନିମୟରେ। ସେ ଅନେକ ଥର ସ୍ୱୀକାର କରିଛନ୍ତି, ସେ ଯାହା କିଛି ପାଇଛନ୍ତି, ଅର୍ଥ... ପ୍ରତିପତ୍ତି, ସମ୍ମାନ, ସବୁ କିଛି ସେକ୍ସ ବିନିମୟରେ। ଜଣେ ବ୍ରିଟିଶ ସାମ୍ବାଦିକ ଉଇକରଡିଙ୍କୁ ସାକ୍ଷାତକାର ଦେଇ ସେ କହିଥିଲେ - "ହଲିଉଡ୍‌ରେ କୌଣସି ଫିଲ୍ମରେ ନାୟିକା ହେବାକୁ ହେଲେ, ଅନେକ ମହିଳାଙ୍କୁ ଯାହା କରିବାକୁ ପଡ଼େ ସେ ତାହାହିଁ କରିଛନ୍ତି। ଏଥିରେ ଭୁଲ୍ ରହିଲା କେଉଁଠି ? ସଫଳ ନାୟିକା ହେବାକୁ ହେଲେ ରାତି ରାତି ଧରି ପ୍ରଯୋଜକ, ନିର୍ଦ୍ଦେଶକମାନଙ୍କ ବୁଭୂକ୍ଷାର ଶୀକାର ହେବାକୁ ବାଧ୍ୟ।"

ଦାନାପାଣିର ସଙ୍ଘର୍ଷରେ ମେରିଲିନ୍‌ଙ୍କୁ କଠିନ ସଂଗ୍ରାମ କରିବାକୁ ପଡ଼ିଛି। ମଡେଲ ହେବାଠାରୁ କଲଗାର୍ଲ ପର୍ଯ୍ୟନ୍ତ ସବୁକିଛି ସେ ଆଦରି ନେଇଛନ୍ତି କେବଳ ବଂଚିବା ପାଇଁ। ଚଳଚ୍ଚିତ୍ର ଆକଟିଂ କୋର୍ସ ଶିକ୍ଷା କରିବା ପାଇଁ ଯଥେଷ୍ଟ ଅର୍ଥ ଦରକାର ହେବାରୁ ତାଙ୍କୁ କିଛି ସମୟ ପାଇଁ ତଳ ପାହାଚକୁ ଓହ୍ଲାଇ ଆସିବାକୁ ପଡ଼ିଛି। ସେ ଭଲଭାବେ ଜାଣିଥିଲେ, ତାଙ୍କର ମାଂସହିଁ ତାଙ୍କୁ ବଞ୍ଚିବା ପାଇଁ ଖୋରାକ୍ ଯୋଗାଇବ। ଏଥିପାଇଁ ସେ ବିନା ଦ୍ୱିଧାରେ ରାଜରାସ୍ତାକୁ ଓହ୍ଲାଇ ଆସିଥିଲେ। ଶୁଣାଯାଏ, ସେ ଜିମ୍ ଡଗରଟଙ୍କୁ ବିବାହ କରିଥିଲେ। ଜିମ୍ କୌଣସି କାର୍ଯ୍ୟରେ ଦୀର୍ଘଦିନ ଧରି ବାହାରେ ରହିବାରୁ ମେରିଲିନ୍ ନିଜର ଆର୍ଥିକ ସଂକଟ ଦୂର କରିବା ପାଇଁ ପ୍ରଥମ ଥର ପାଇଁ ମାତ୍ର ୧୫ଡଲାର ପାଇଁ ବାଧ୍ୟ ହୋଇ ଉପପତ୍ନୀ ସାଜିଥିଲେ। ତା'ପରଠାରୁ ସେ ନିୟମିତ ଭାବେ କଲଗାର୍ଲ ବ୍ୟବସାୟ ଜାରି ରଖିଥିଲେ।

ମୃତ୍ୟୁ ପୂର୍ବରୁ ମେରିଲିନ୍ ଥରେ ଜଣେ ସାମ୍ବାଦିକଙ୍କୁ କହିଥିଲେ ଜୀବନରେ ଅନେକ ଆସିଛନ୍ତି। ତାଙ୍କୁ ଅର୍ଥ ଏବଂ ଉପଢୌକନ ଯାଚିଛନ୍ତି। କିନ୍ତୁ କାହାରି ରକ୍ଷିତା ହେବାକୁ ସେ ପସନ୍ଦ କରିନାହାନ୍ତି। ସାରା ଜୀବନ ଏକା ଏକା ହୋଇ ରହି ଯାଇଛନ୍ତି। ସେ ହଲିଉଡ୍‌କୁ ଯେତିକି ଭଲ ପାଆନ୍ତି ସେତିକି ଘୃଣା କରନ୍ତି ମଧ୍ୟ। ଏଠାରେ ଜଣେ ନାୟିକାକୁ ତାର ସୌନ୍ଦର୍ଯ୍ୟ ଏବଂ ନଗ୍ନତା ଦୃଷ୍ଟିରୁ ବିଚାର କରାଯାଏ, ଗୁଣ ଦୃଷ୍ଟିରୁ ନୁହେଁ। ଅତି ଘୃଣାର ସହିତ ସେ ଆକ୍ଷେପ କରନ୍ତି, ଏ ହଲିଉଡ୍ ଏକ ଏପରି ସ୍ଥାନ ଯେଉଁଠି ଗୋଟିଏ କିସ୍ ପାଇଁ ପ୍ରଯୋଜକ ଏକ

ହଜାର ଡଲାର ଦେବାକୁ ପଛାନ୍ତି ନାହିଁ। କିନ୍ତୁ ଭଲ ଅଭିନୟ କଲେ ୫୦ ସେଣ୍ଟ ବି ମିଳେନି।

ମେରିଲିନ୍‌ଙ୍କ ଜୀବନରେ ଦୁଃଖ ରହିଥିଲା, ସେ ମନଲାଖି ସ୍ୱାମୀଟିଏ ପାଇ ପାରିଲେ ନାହିଁ। ଯେଉଁମାନେ ତାଙ୍କ ପାଖକୁ ଆସିଲେ, ସମସ୍ତେ ପ୍ରେମିକ ଭ୍ରମର ସାଜି। ସେ ତାଙ୍କର ପିତାଙ୍କୁ ଜାଣି ନଥିଲେ। ତେଣୁ ତାଙ୍କ ଭିତରେ ପିତାଙ୍କ ପାଇଁ ଏକ ଶୂନ୍ୟସ୍ଥାନ ରହି ଯାଇଥିଲା। ବିବାହ ଉପରେ ସେ ଅଧିକ ଆସ୍ଥାବାନ ଥିଲେ। କିନ୍ତୁ ତାଙ୍କ ଜୀବନରେ ଏଇଟି ଥିଲା ଏକ ପ୍ରହେଳିକା। ମେରିଲିନ୍ ସ୍ୱଳ୍ପ ଜୀବନକାଳ ମଧ୍ୟରେ ୩ ଜଣ ବ୍ୟକ୍ତିଙ୍କୁ ବିବାହ କରିଥିଲେ। ସେମାନେ ହେଲେ ଜିମ୍ ଡଗର୍‌ଟି, ଜୋ-ଡି-ମାଜିଓ ଏବଂ ପ୍ରଖ୍ୟାତ ନାଟ୍ୟକାର ଆର୍ଥର ମିଲର। ଯେ ତିନିଜଣଯାକ ପତିଙ୍କୁ ମେରିଲିନ୍ ଡାଇଭର୍ସ କରିଥିଲେ। ସେ ୪ର୍ଥ ପତି ଗ୍ରହଣ ପୂର୍ବରୁ ମୃତ୍ୟୁବରଣ କରିଥିଲେ। ତଥାପି ଏଇ ଶେଷ ପତିଙ୍କ ପାଇଁ ତାଙ୍କ ଭିତରେ ଅତୃପ୍ତ ବାସନା ରହିଗଲା।

ମେରିଲିନ୍‌ଙ୍କ ଜୀବନ ଥିଲା ବିଚିତ୍ର ପ୍ରେମର ଏକ ଉଚ୍ଛଳ ନଦୀ। ବହୁ ଅତିଥି ଏଇ ନଦୀରେ ଅବଗାହନ କରିଛନ୍ତି। ତୃଷା ମେଣ୍ଟାଇଛନ୍ତି ଏବଂ ଚାଲି ଯାଇଛନ୍ତି। ଏଥିପାଇଁ ମେରିଲିନ୍ ଦୁଃଖ କରିନାହାନ୍ତି। ଅନ୍ୟକୁ ଆନନ୍ଦ ଦେବାଟାକୁ ସେ ଯେମିତି ନିଜ ଜୀବନର ବ୍ରତ ବୋଲି ଧରି ନେଇଛନ୍ତି। ମେରିଲିନ୍‌ଙ୍କ ଜୀବନରେ ଜଣେ ବ୍ୟକ୍ତିଙ୍କର ଆବିର୍ଭାବ ହୋଇଥିଲା, ଯାହାଙ୍କଠାରୁ ସେ କିଛି ନିଷ୍କପଟ ସ୍ନେହ, ପ୍ରେମ ପାଇଥିଲେ। ଏଇ ବ୍ୟକ୍ତିଙ୍କ ନାମ ଜନି ହାଇଡ୍। ସେ ମେରିଲିନ୍‌ଙ୍କୁ ନିଜର କନ୍ୟା ଭଳି ଭଲ ପାଉଥିଲେ। ତାଙ୍କର ବହୁତ ସମ୍ପତ୍ତି ଥିଲା। ଏଇ ସମ୍ପତ୍ତିର ଉତ୍ତରାଧିକାରିଣୀ ହେବାକୁ ସେ ମେରିଲିନ୍‌ଙ୍କୁ ବିବାହ କରିବାକୁ କହିଥିଲେ। କିନ୍ତୁ ମେରିଲିନ୍ ଏଥିପାଇଁ ସମ୍ମତ ହୋଇ ନଥିଲେ। ଅବଶ୍ୟ ହାଇଡ୍‌ଙ୍କ ଚରିତ୍ର ଉପରେ ତାଙ୍କର କୌଣସି ସନ୍ଦେହ ନଥିଲା। ଆଉ ଜଣେ ବ୍ୟକ୍ତିଙ୍କ ଉପରେ ମେରିଲିନ୍‌ଙ୍କର ଅଗାଧ ବିଶ୍ୱାସ ରହିଥିଲା। ସେ ହେଲେ ତାଙ୍କର ଦ୍ୱିତୀୟ ସ୍ୱାମୀ ମାଜିଓ। ଜୀବନସାରା ଡାଇଭର୍ସ ପରେ ମଧ୍ୟ ମାଜିଓ, ତାଙ୍କର ଜଣେ ହିତାକାଙ୍‌କ୍ଷୀ ବନ୍ଧୁ ହୋଇ ରହିଯାଇଥିଲେ।

ମେରିଲିନ୍ ୧୬ ବର୍ଷ ବୟସରେ ମେଟାଲ ୱାର୍କର ଜିମ୍ ଡଗର୍ଟିଙ୍କୁ ୪ ବର୍ଷ ପାଇଁ ବିବାହ କରିଥିଲେ। ଡାଇଭର୍ସ ପରେ ସେ ମଡେଲ ହୋଇଥିଲେ। ୨୦ ବର୍ଷ ବେଳେ ସେ ତାଙ୍କର ପିଲାଦିନର ନାମ 'ନର୍ମା ଜିନ୍ ବେକର୍'କୁ ପରିବର୍ତ୍ତନ କରି ମେରିଲିନ୍ ମୋନ୍‌ରୋ ରଖିଥିଲେ। ପରେ ପରେ ସେ ଜୋ-ଡି-ମାଜିଓଙ୍କୁ ବିବାହ କରିଥିଲେ। ଏ ବିବାହ ବେଶିଦିନ ସ୍ଥାୟୀ ହୋଇପାରି ନଥିଲା। କାରଣ ସେ ଅନେକ ବ୍ୟକ୍ତିଙ୍କ ସହିତ ସମ୍ପର୍କ ରକ୍ଷା କରିଥିଲେ। ଯାହାକୁ ଜୋ ଆଦୌ ପସନ୍ଦ କରୁନଥିଲେ। ଏହାପରେ ସେ ବିଖ୍ୟାତ ନାଟ୍ୟକାର ଆର୍ଥର ମିଲରଙ୍କୁ ବିବାହ କରିଥିଲେ। ୫ ବର୍ଷ ପରେ ତାଙ୍କୁ ମେରିଲିନ୍ ଡାଇଭର୍ସ କରିଥିଲେ ୧୯୬୧ରେ। ଏହାପରେ କିଛି ସମୟ ଆଉ ଜଣେ ବ୍ୟକ୍ତି ଏବ୍‌ସ ମନଟାଣ୍ଡଙ୍କ ସହିତ ତାଙ୍କର ସମ୍ପର୍କ ଗଢ଼ି ଉଠିଥିଲା, ମାତ୍ର ସ୍ଥାୟୀ ହୋଇ ପାରିନଥିଲା।

ଜୀବନ କାଳ ଭିତରେ ମେରିଲିନ୍ ଦୁଇଜଣଙ୍କ ସହିତ ହୃଦୟ ଖୋଲି କଥାବାର୍ତ୍ତା କରିଥିଲେ। ସେ ଦୁଇଜଣ ହେଲେ ତାଙ୍କର ପୂର୍ବତନ ପତି, ବନ୍ଧୁ ଏବଂ ପରାମର୍ଶଦାତା ଜୋହାନୀ ହାଇଡ୍ ଏବଂ ମାଜିଓ। ମେରିଲିନ୍‌ଙ୍କ ଜୀବନର ଶେଷ ପର୍ଯ୍ୟନ୍ତ ଏମାନେ ତାଙ୍କୁ ସହାୟତା ଦେଇ ଆସିଥିଲେ। କେନେଡ଼ି ପରିବାର ସହିତ ତାଙ୍କର ସଂଯୋଗ ହିଁ ତାଙ୍କୁ ଅଧିକ କ୍ଷତିଗ୍ରସ୍ତ କରାଇଥିଲା। ସହଜ ମନରେ ସବୁ କଥାକୁ ଗ୍ରହଣ କରିନେବାଟା ଥିଲା ମେରିଲିନ୍‌ଙ୍କ ଜୀବନର ଗୁରୁତ୍ୱପୂର୍ଣ୍ଣ ଭୁଲ୍।

ମୃତ୍ୟୁର ଶେଷ ଆଡ଼କୁ ମେରିଲିନ୍ କେନେଡ଼ି ପରିବାର ସହିତ ଜଡ଼ିତ ହୋଇଯାଇଥିଲେ। ଆମେରିକାର ରାଷ୍ଟ୍ରପତି କେନେଡ଼ିଙ୍କ ସହିତ ସେ ଅନେକ ରାତ୍ରି ଯାପନ କରିଛନ୍ତି। ଏଥିପାଇଁ ତାଙ୍କୁ କେନେଡ଼ିଙ୍କ ସ୍ତ୍ରୀଙ୍କ ଠାରୁ ଅତି କଦର୍ଯ୍ୟ ଭାଷାରେ ଭର୍ତ୍ସନା ଶୁଣିବାକୁ ପଡ଼ିଛି। କେନେଡ଼ି ମଧ୍ୟ ମେରିଲିନ୍‌ଙ୍କ ପାଇଁ ପାଗଳ ହୋଇ ଉଠୁଥିଲେ। କିନ୍ତୁ ପ୍ରକୃତରେ ମେରିଲିନ୍ ତାଙ୍କ ସାନ ଭାଇ ରବର୍ଟ କେନେଡ଼ିଙ୍କୁ ଭଲ ପାଉଥିଲେ ଏବଂ ମନେ ମନେ ବିବାହ ପାଇଁ ସ୍ଥିର କରି ସାରିଥିଲେ। କିନ୍ତୁ ରବର୍ଟଙ୍କଠାରୁ ଏଥିପାଇଁ କୌଣସି ଆଭାସ ମିଳି ନଥିଲା। କାରଣ ରବର୍ଟ ଜାଣିଶୁଣି

ନିଜର କ୍ୟାରିଅରକୁ ନଷ୍ଟ କରିବାକୁ ଚାହୁଁନଥିଲେ। ତେଣୁ ସେ କେବଳ ପ୍ରେମ ପାଇଁ ମେରିଲିନ୍‌ଙ୍କ ସହିତ ସମ୍ପର୍କ ରଖୁଥିଲେ।

୧୯୬୨ ଅଗଷ୍ଟ ମାସର ପ୍ରଥମରେ ରବର୍ଟ ନିଜର ସ୍ତ୍ରୀ ଏବଂ ୪ ଜଣ ପିଲାଙ୍କ ସହିତ ସାନଫ୍ରାନ୍‌ସିସ୍କୋ ଯାଇଥିଲେ। ବିନା ନିମନ୍ତ୍ରଣରେ ମେରିଲିନ୍ ଏଠାରେ ପହଂଚି ବିବାହ ପାଇଁ ଅନୁରୋଧ କରିଥିଲେ। ସେ ଭାବିଥିଲେ ରବର୍ଟ ନିଜ ସ୍ତ୍ରୀ ଏଥେଲ୍‌ଙ୍କୁ ଡାଇଭର୍ସ କରି ତାଙ୍କୁ ଗ୍ରହଣ କରିବେ। କିନ୍ତୁ ରବର୍ଟଙ୍କଠାରୁ ଏହାର କୌଣସି ପ୍ରକାର ଅନୁକୂଳ ସୂଚନା ନପାଇ ହତାଶ ହୋଇପଡ଼ିଲେ। ଅଗଷ୍ଟ ୪ ତାରିଖ ଦିନ ସେ ପାଗଳ ହୋଇଉଠିଥିଲେ। ଟେନସନରୁ ମୁକ୍ତି ପାଇଁ ସେ ସେହି ଶନିବାର ଦିନ ରାତିରେ କେତୋଟି ସ୍ଲିପିଙ୍ଗ ପିଲ ଖାଇ ଶୋଇ ଯାଇଥିଲେ। ପରଦିନ ସକାଳୁ ଅର୍ଥାତ୍ ୫ ତାରିଖ ଦିନ ତାଙ୍କର ମୃତଦେହ ଆବିଷ୍କାର କରାଯାଇଥିଲା। ଏକ ଅତୃପ୍ତ ବାସନା ନେଇ ମେରିଲିନ୍ ଆଖି ବୁଜିଥିଲେ। କାମନାର କୋଣାର୍କରେ ଏଇ ବାସନାର ଦେବୀ ଜଣକ ସବୁଦିନ ପାଇଁ ଏକ ଆଶରୀରୀ ଆତ୍ମା ହୋଇ ରହିଗଲେ।



# ସ୍ୱପ୍ନର ଶାହାଜାଦୀ ସୋଫିଆ (ଇଟାଲୀ)

ସିଏ ଜନ୍ମଲାଭ କରିଥିଲା ଏକ ଅବିବାହିତ ମାଆର ଗର୍ଭରୁ, ଯାହା ପାଖରେ ନିଜ ଛୁଆକୁ ଖୁଆଇବା ପାଇଁ ନିଜ ସ୍ତନରେ କ୍ଷୀର ଟୋପାଏ ବି ନଥିଲା। ମୁଣ୍ଡ ଗୁଞ୍ଜିବା ପାଇଁ ଏଇ ହତଭାଗିନୀ ମା' ପାଇଁ ଚାଳ ନଥିଲା କିମ୍ବା ଖାଇବା ପାଇଁ ଦାନା ନଥିଲା। ନିଜର ଜୀବନ ମରଣ ଏକ ପ୍ରଶ୍ନବାଚୀ ହୋଇଥିବା ବେଳେ, ଅଭିଶପ୍ତ ସନ୍ତାନଟିକୁ ସେ ଚାହୁଁଥିଲା ନୂଆ ଦୁନିଆର ସ୍ପର୍ଶ ଦେବାପାଇଁ। ବାସ୍ତବରେ ଜୀବନ ମୃତ୍ୟୁର ଖେଳ ଭିତରେ ଏଇ ସନ୍ତୁଳିତ ପ୍ରାଣ ଦୁଇଟି ବଂଚିରହିବାର ରାହା ସଂଗ୍ରହ କରିପାରିଥିଲେ। ସେହି ଅଭିଶପ୍ତ କନ୍ୟା ସନ୍ତାନଟି ବିଶ୍ୱ ଇତିହାସରେ ଏକ ଚମକପ୍ରଦ ସ୍ଥାନ ନିଜ ପାଇଁ ସୃଷ୍ଟି କରିପାରିଛି....।

> ସୋଫିଆଙ୍କ ସ୍ୱପ୍ନ ସଫଳ ହେଲା। ସେ ଦୁଇଟି ପୁତ୍ର ସନ୍ତାନକୁ ଜନ୍ମ ଦେଇଥିଲେ, ଜୁନିଅର କର୍ଲୋପଣ୍ଟି ଏବଂ ଏଡୱାର୍ଡୋ। ସୋଫିଆ ଖୁସୀ ହୋଇଥିଲେ। ତେବେ ଭୁଲିପାରି ନଥିଲେ ସେହି ଦିନଟିକୁ, ଯାହା ତାଙ୍କ ପାଇଁ ଥିଲା ଆନନ୍ଦର ଦିନ ଏବଂ ଯନ୍ତ୍ରଣାର ଦିନ। ସେଦିନ ସୋଫିଆଙ୍କର ସୁଟିଙ୍ଗ ଥିଲା କାରୀଙ୍କ ସହିତ। ଏକ ବିବାହ ସିନ୍ ସୁଟିଙ୍ଗ ହେଉଥାଏ। ବିବାହ ପରେ କାରୀ ସୋଫିଆର ହାତକୁ ସ୍ନେହରେ ଚୁମ୍ବନ ଦେଇଥିଲେ। ସୋଫିଆଙ୍କୁ ଲାଗୁଥିଲା, ଯେମିତି ସେମାନେ ପ୍ରକୃତରେ ବିବାହ କରି ଫେରିଛନ୍ତି।

ଇଟାଲୀର ରକ୍ଷଣଶୀଳ ସମାଜ ବ୍ୟବସ୍ଥା ବିରୁଦ୍ଧରେ ତାକୁ ତିଷ୍ଠି ରହିବା ପାଇଁ ଭୀଷଣ ସଂଗ୍ରାମ କରିବାକୁ ପଡ଼ିଥିଲା ସେଦିନ। ୧୯୩୪ ମସିହାର ଘଟଣା। ଅବିବାହିତ ଯୁବତୀର କନ୍ୟାସନ୍ତାନ ପ୍ରସବକୁ ପଜୁଲୀ ସହରର ଜନସାଧାରଣ ଭଲ ମନରେ ଗ୍ରହଣ କରିନଥିଲେ। ତଥାପି ରୋମିଲଡ଼ାକୁ ସଂଗ୍ରାମ କରିବାକୁ ପଡ଼ିଥିଲା ପରିସ୍ଥିତି ସହିତ। ତାର ପ୍ରେମିକ ରିକାର୍ଡ଼ୋ ସିକୋଲନ ଚାହୁଁଥିଲା ରୋମିଲଡ଼ା ଗର୍ଭପାତ କରୁ। କିନ୍ତୁ ପ୍ରେମିକା ରୋମିଲଡ଼ା ଶିଶୁ ସନ୍ତାନଟିକୁ ଜନ୍ମ ଦେବାକୁ ବଦ୍ଧ ପରିକର ଥିଲା, ଯଦିଚ ରିକାର୍ଡ଼ୋ ତାକୁ ବିବାହ କରିବାକୁ ପ୍ରସ୍ତୁତ ନଥିଲା। ଏପରି ଏକ

ଘଟଣାରେ ରୋମିଲଡ଼ାର ପରିବାର ଭାଙ୍ଗି ପଡ଼ିଥିଲେ । ରୋମର ଏକ ଚାରିଟି ୱାର୍ଡରେ କନ୍ୟାସନ୍ତାନଟିକୁ ଜନ୍ମ ଦେଇଥିଲା ରୋମିଲଡ଼ା ନିଜ ମା'ର ପରାମର୍ଶରେ । ଆଶ୍ଚର୍ଯ୍ୟର କଥା, ଏହି ସମୟରେ ରିକାଡ଼ୋ ସେଠାରେ ପହଂଚି ସନ୍ତାନଟିକୁ ନିଜର ବୋଲି ଗ୍ରହଣ କରିଥିଲା । ପିତାର ଟାଇଟଲ ଅନୁସାରେ କନ୍ୟାର ନାମ ରହିଲା ସୋଫିଆ ସିକୋଲନ ।

ଶିଶୁକନ୍ୟାଟି ପାଇଁ ରୋମିଲଡ଼ାଙ୍କୁ ବହୁ ନିର୍ଯ୍ୟାତନାର ଶୀକାର ହେବାକୁ ପଡ଼ିଥିଲା । ଯେଉଁ ବୋଡ଼ିଙ୍ଗ ହାଉସରେ ସେ ରହୁଥିଲେ, ତାର ମାଲିକାଣୀ ବାରମ୍ବାର ଶିଶୁକନ୍ୟାଟିକୁ ମୃତ୍ୟୁମୁଖକୁ ଠେଲି ଦେବାପାଇଁ ପ୍ରବର୍ତ୍ତାଇ ବିଫଳ ହୋଇଥିଲେ । ଦିନେ ସୋଫିଆ ଭୀଷଣ ଅସୁସ୍ଥ ହୋଇ ପଡ଼ିଥିଲା । ପ୍ରତି ମୁହୂର୍ତ୍ତରେ ମୃତ୍ୟୁ ଏଇ ଶିଶୁଟିକୁ ହାତଠାରି ଡାକୁଥିଲା । ତା ସାଙ୍ଗକୁ ମାଲିକାଣୀଙ୍କର ଘରଭଡ଼ା ପାଇଁ ତାଗିଦା । ରୋମିଲଡ଼ା କ'ଣ କରିବ କିଛି ଭାବିପାରୁନଥିଲା । ଦିନେ ହଠାତ୍ ସ୍ଥିର କଲା, ମା' ପାଖକୁ ଫେରିଯିବ । ସତରେ ପଜୁଲିରେ ସୋଫିଆକୁ ଏବଂ ତାର ମା'କୁ ନିରାପଦ ଆଶ୍ରୟ ମିଳିଲା । ରୋମିଲଡ଼ା ସ୍ଥାନୀୟ ହୋଟେଲମାନଙ୍କରେ ପିଆନୋ ବଜାଇ କିଛି ପଇସା ରୋଜଗାର କରୁଥିଲା । ସେଥିରେ ଉଭୟଙ୍କର ଖର୍ଚ୍ଚ କୌଣସି ପ୍ରକାରେ ଚଳି ଯାଉଥିଲା । ସୋଫିଆକୁ ଚାରିବର୍ଷ ବେଳେ ରୋମିଲଡ଼ା ଆଉ ଏକ କନ୍ୟାସନ୍ତାନକୁ ଜନ୍ମ ଦେଲା । ତାର ନାମ ରହିଲା ମାରିଆ । ଏଥର କିନ୍ତୁ ରିକାଡ଼ୋ ନବଜାତକଟିକୁ ନିଜର ଟାଇଟଲ ଦେବାକୁ ପ୍ରସ୍ତୁତ ନଥିଲା ।

ରୋମିଲଡ଼ାର ଯତ୍‌ସାମାନ୍ୟ ଆୟରେ ସୋଫିଆର ଶିକ୍ଷା ଆରମ୍ଭ ହେଲା । ରିକାଡ଼ୋ ପ୍ରତି ବାଲ୍ୟକାଳରୁ ସୋଫିଆ ମନରେ ଏକପ୍ରକାର ଘୃଣା ଜମାଟ ବାନ୍ଧିବାକୁ ଆରମ୍ଭ କରିଥିଲା । ନିଜ ପିତାର ସାନିଧ୍ୟ ପାଇଁ ସେ ବ୍ୟାକୁଳ ହେଉଥିଲା କିନ୍ତୁ ସାକ୍ଷାତରେ ତାକୁ ପିତା ବୋଲି ଗ୍ରହଣ କରିବାକୁ ପ୍ରସ୍ତୁତ ନଥିଲା । ୧୯୩୯ ବିଶ୍ୱଯୁଦ୍ଧର ଲୋମହର୍ଷଣକାରୀ ଦୃଶ୍ୟ ସହିତ ସୋଫିଆ ଭଲଭାବେ ପରିଚିତ ଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ପଜୁଲିର ଏକମାତ୍ର ସିନେମା ହଲ୍ ଖୋଲିଲା । ଏଥିରେ ହଲିଉଡ଼ ଫିଲ୍ମ ଖେଳିଲା, ଯାହା ସୋଫିଆ ଭିତରେ ଲୁଚିରହିଥିବା ପ୍ରତିଭାର ମୁକ୍ତି ପାଇଁ ଯଥେଷ୍ଟ ଖୋରାକ ଯୋଗାଇଥିଲା । ମୁଖ୍ୟତଃ ସୋଫିଆ ପିଲାଦିନରୁ ଗ୍ରୀତା ହେବର୍ଥ ଏବଂ ଭେରୋନିକା ଲେକ୍‌ଙ୍କ ଅଭିନୟ ଦ୍ୱାରା ପ୍ରଭାବିତ

ହୋଇଥିଲା । ୧୪ ବର୍ଷ ବେଳେ ସୋଫିଆର ମା' ତାକୁ 'କୁଇନ୍ ଅଫ୍ ଦି ସି' ବିଉଟି କଣ୍ଟେଷ୍ଟରେ ଭାଗ ନେବା ପାଇଁ ପ୍ରବର୍ତ୍ତାଇଥିଲେ । ଆପତ୍ତି କରିଥିଲେ ମଧ୍ୟ ଶେଷରେ ସେ ଏଥିରେ ଭାଗ ନେଇଥିଲା । ଏହା ଥିଲା ୧୯୪୮ ମସିହାର ଘଟଣା । 'କୁଇନ୍ ଅଫ୍ ଦି ସି' - ସୋଫିଆ ହୋଇପାରି ନଥିଲା ସତ, ତେବେ ପ୍ରଥମ ବାରଜଣଙ୍କ ଭିତରେ ସ୍ଥାନ ପାଇ ବହୁ ପୁରସ୍କାର ସହ ଅର୍ଥ ଲାଭ କରିଥିଲା ।

ରୋମିଲଡ଼ା ଚାହୁଁଥିଲା ନିଜେ କନ୍ୟାକୁ ଏକ ଅଭିନେତ୍ରୀ ଭାବେ ଗଢ଼ି ତୋଳିବାକୁ । ନେପଲ୍‌ସର ଡ୍ରାମା ସ୍କୁଲରେ ସୋଫିଆ ପଢ଼ିଲା । ଦିନେ ସ୍କୁଲରେ ସୋଫିଆ ଶୁଣିଲା ଯେ ଗୋଟିଏ ବଡ଼ ଆମେରିକାନ୍ ଫିଲ୍ମ କମ୍ପାନୀ ରୋମ ଆସୁଛି ଏବଂ ସେ ଶତାଧିକ ଏକ୍‌ସଟ୍ରା ଦରକାର କରିବେ ତାଙ୍କର ଫିଲ୍ମ ପାଇଁ । ରୋମିଲଡ଼ା କନ୍ୟା ସୋଫିଆକୁ ନେଇ ରୋମ ଗଲା । ରୋମ୍‌ରେ ରିକାର୍ଡ଼ୋ ପାଖରୁ କୌଣସି ପ୍ରକାର ସାହାଯ୍ୟ ନପାଇ ରୋମିଲଡ଼ାକୁ ହତାଶ ହେବାକୁ ପଡ଼ିଲା । ବାଧ୍ୟ ହୋଇ ମାତା ଏବଂ କନ୍ୟା ଜଣେ ସମ୍ପର୍କୀୟଙ୍କ ଘରେ କିଛିଦିନ ପାଇଁ ରହିଲେ । ପରେ ପରେ ସେମାନେ ସିନେସିଟା ଯାଇ କମ୍ପାନୀର ଡାଇରେକ୍ଟର ମେରଭିନ୍ ଲି ରୟଙ୍କୁ ଭେଟିଲେ । ଉଭୟ ମଧ୍ୟ ଏକ୍‌ସଟ୍ରା ପାଇଁ ଚୁକ୍ତିବଦ୍ଧ ହେଲେ । ଏଇଠି ମେରଭିନ୍ ସୋଫିଆର ଟାଇଟଲ 'ସିକୋଲନ'କୁ ବଦଳାଇ 'ଲାଜାରୋ' ରଖିଲେ । ବୋଧହୁଏ ଏଇଠୁ ସୋଫିଆର ଭାଗ୍ୟ ଡୋରି ଫିଟିଲା ।

ଦିନେ ସୋଫିଆ ତାର ସାଙ୍ଗମାନଙ୍କ ସହିତ ଗୋଟିଏ ନାଇଟକ୍ଲବ୍ ରେଷ୍ଟୁରାଣ୍ଟକୁ ଯାଇଥାଏ । ସେଠାରେ 'ମିସ୍ ରୋମା' ବିଉଟି କଣ୍ଟେଷ୍ଟ ହେଉଥାଏ । କଫି ଟେବୁଲରେ ବସିଥିବା ବେଳେ ଜଣେ ଲୋକ ଆସି ସୋଫିଆକୁ ସେହି ପ୍ରତିଯୋଗିତାରେ ଭାଗ ନେବାକୁ କହିଲା । ମାତ୍ର ସୋଫିଆ ସିଧାସଳଖ ମନା କରିଦେବାରୁ କିଛି ସମୟ ପରେ ପୁଣି ଲୋକଟି ଫେରିଆସି କହିଲା, ପ୍ରତିଯୋଗିତାର ବିଚାରକଗଣ ହେଉଛନ୍ତି ସିନେମା ଜଗତର ଲୋକ । ତାଙ୍କ ଭିତରୁ ଜଣେ ମେମ୍ବର ଚାହାନ୍ତି, ସେ ଅଂଶ ଗ୍ରହଣ କରୁ । ବନ୍ଧୁମାନଙ୍କ ଅନୁରୋଧରେ ଏଥର ସୋଫିଆ ସେହି କଣ୍ଟେଷ୍ଟରେ ଭାଗନେଲା ଏବଂ ସେକେଣ୍ଡ ପ୍ରାଇଜ୍ ପାଇଲା । କିଛି ସମୟ ପରେ ଜଣେ ଭଦ୍ରବ୍ୟକ୍ତି ସୋଫିଆ ଟେବୁଲ୍ ପାଖକୁ ଆସି ନିଜକୁ କାର୍ଲୋପଣ୍ଟି ବୋଲି ପରିଚୟ ଦେଲେ ।

କାର୍ଲୋପଣ୍ଟି ସୋଫିଆଙ୍କୁ ଜଣେ ଭଲ ଅଭିନେତ୍ରୀ କରି ଗଢ଼ି ତୋଳିବାର ଆଶା ରଖିଛନ୍ତି ବୋଲି ପ୍ରକାଶ କଲେ। ଏଥିପାଇଁ ସୋଫିଆର ଉପଯୁକ୍ତ ଚେହେରା ଅଛି ବୋଲି କହିବାରୁ ସୋଫିଆ ମଧ୍ୟ ମନେ ମନେ କୃତ୍ୟ କୃତ୍ୟ ହେଲା। ପରଦିନ ସୋଫିଆର ସ୍କ୍ରିନ ଟେଷ୍ଟ ହେଲା। ପ୍ରତିଥର ଫଳାଫଳ ନେଗେଟିଭ୍ ବାହାରିଲା। କ୍ୟାମେରାମାନ ସୋଫିଆର ଲମ୍ବା ନାକ ବିଷୟ ଉତ୍‌ଥାପନ କରିବାରୁ ସୋଫିଆ ଭୀଷଣ ରାଗିଯାଇ ପଳାଇ ଆସିଲା। ତେବେ ସେ ଯାହା ହେଉ, ୧୯୫୨ରେ ସୋଫିଆ ୧୮ ବର୍ଷ ବୟସରେ ମେରଭିନ ଲିରୟ୍‌ଙ୍କ ଫିଲ୍ମରେ ଭଲ ରୋଲ୍‌ଟି ପାଇଲା। ଫିଲ୍ମଟି ହିଟ୍ ହେଲା। ଡାଇରେକ୍ଟର ମେରଭିନ ଏଥର କିନ୍ତୁ ସୋଫିଆର ଟାଇଟଲ 'ଲାଜାରୋ'ରୁ 'ଲରେନ'କୁ ପରିବର୍ତ୍ତନ କରିଦେଲେ।

ଏଣିକି ସୋଫିଆ ଲରେନଙ୍କର ଏକ ନୂଆ ଭାବମୂର୍ତ୍ତି ଗଢ଼ିଉଠିଲା। 'ଆଏଡା' ଫିଲ୍ମରେ ତାଙ୍କର ଅଭିନୟ ତାଙ୍କୁ ଯଥେଷ୍ଟ ପ୍ରଶଂସା ଏବଂ ଅର୍ଥ ଆଣି ଦେଇଥିଲା। ନିଜ ଭଉଣୀ ମାରିଆର କୌଣସି ଟାଇଟଲ ନଥିବାରୁ ସେ ଲଜ୍ଜା ଏବଂ ଦୁଃଖରେ କାଳ କାଟୁଥିଲା। ଏହି ଅପମାନରୁ ବଞ୍ଚାଇବା ପାଇଁ ସୋଫିଆ ନିଜ ପିତା ରିକାଡ଼ୋଙ୍କୁ ଏକ ମିଲିୟନ ଲାୟାର ଦେଇଥିଲା। ଫଳରେ ମାରିଆକୁ ବାପର ଟାଇଟଲ ମିଳିଥିଲା। ଏଥିରେ ଭାଗି ପଡ଼ିଥିଲେ ରୋମିଲଡା। 'ଆଏଡା'ର ସଫଳତା ପରେ କାର୍ଲୋପଣ୍ଟି କେବଳ ତାଙ୍କରି ଫିଲ୍ମରେ ଅଭିନୟ ପାଇଁ ସୋଫିଆଙ୍କୁ ଚୁକ୍ତିବଦ୍ଧ କରାଇ ନେଇଥିଲେ। ଏଥିରେ ଅବଶ୍ୟ ପ୍ରଥମେ ବାଧା ଦେଇଥିଲେ ରୋମିଲଡା। କିନ୍ତୁ ପରେ ସବୁ ସହଜ ହୋଇଯାଇଥିଲା। ଲଗାତାର ୧୦ଟି ଫିଲ୍ମରେ ସୋଫିଆ ଅଭିନୟ କରିଥିଲା।

କାର୍ଲୋପଣ୍ଟି ଥିଲେ ଦୁଇଟି ସନ୍ତାନର ଜନକ। ତାଙ୍କର ବୟସ ଥିଲା ୩୭ ବର୍ଷ। ତେବେ ଗୋଟିଏ କଥା ହେଲା, ଏଇ କେତୋଟି ଫିଲ୍ମ ଭିତରେ କାର୍ଲୋ ଏବଂ ସୋଫିଆ ପରସ୍ପର ଖୁବ୍ ନିକଟବର୍ତ୍ତୀ ହୋଇପାରିଥିଲେ। କାର୍ଲୋ ସୋଫିଆଙ୍କ ଭିତରେ ଥିବା ନାରୀତ୍ୱକୁ ଖୁବ୍ ତାରିଫ କରୁଥିଲେ। ମାତ୍ର ସେମାନଙ୍କର ଏତେଟା ମିଳାମିଶାକୁ ମା' ରୋମିଲଡା ପସନ୍ଦ କରୁନଥିଲେ। ଆଲବର୍ଟ ମୋରାଭିଆଙ୍କ କାହାଣୀ ଉପରେ ଆଧାରିତ 'ଓମାନ ଅଫ୍ ଦି ରିଭର' ଫିଲ୍ମରେ କାର୍ଲୋ ଏବଂ ସୋଫିଆ ପରସ୍ପର ଖୁବ୍ ନିକଟକୁ ଆସିଥିଲେ। ଫିଲ୍ମ ଶେଷ ହେବା

ବେଳକୁ ସୋଫିଆଙ୍କୁ 'ଆଜମା' ରୋଗ ଆକ୍ରମଣ କରିଥିଲା। ଏହି ସମୟରେ ତାଙ୍କ ପାଖରେ ରାତି ରାତି ଜଗି ବସୁଥିଲେ କାର୍ଲୋ, ଫିଲ୍ମ ଶେଷଦିନ କାର୍ଲୋ ସୋଫିଆଙ୍କୁ ଡାଇମଣ୍ଡ ମୁଦି ଉପହାର ଦେଇଥିଲେ। ଏଇ ଦିନଟି ଥିଲା ସୋଫିଆଙ୍କ ପାଇଁ ଏକ ସ୍ମରଣୀୟ ଦିନ।

ମନେ ମନେ କାର୍ଲୋଙ୍କୁ ଖୁବ୍ ଭଲପାଇ ବସିଲେ ସୋଫିଆ। ମା'ଙ୍କର ଶତ ଉପଦେଶ ବିଫଳ ହୋଇଥିଲା। କାର୍ଲୋ ହଠାତ୍ ଦିନେ ଜଣାଇଲେ ଯେ ଗୋଟିଏ ଆମେରିକାନ ଫିଲ୍ମରେ ସେ କାରିଗ୍ରାଣ୍ଟ ଏବଂ ଫ୍ରାଙ୍କ ସିନାତ୍ରାଙ୍କ ସହିତ ସହନାୟିକା ଭାବେ କାମ କରିବେ। କିଛି ସମୟ ପାଇଁ କାରୀ ଏବଂ ସୋଫିଆ ପରସ୍ପରର ନିକଟତର ହୋଇଥିଲେ। ଏହା ପୂର୍ବରୁ କାରୀଙ୍କର ତିନୋଟି ଯାକ ସ୍ତ୍ରୀ ତାଙ୍କୁ ଡାଇଭର୍ସ କରି ସାରିଥିଲେ। ଏଇ ଘଟଣାରେ ସୋଫିଆ ବିବ୍ରତ ହୋଇ ପଡ଼ିଥିଲେ। ପୂର୍ବରୁ ସୋଫିଆ ଚିନ୍ତିତ ଥିଲେ କାରଣ ବିବାହିତ କାର୍ଲୋ ତାଙ୍କ ପତ୍ନୀଙ୍କୁ ଡାଇଭର୍ସ କରୁନଥିଲେ। କାରୀ ଏକ କମନୀୟ ସନ୍ଧ୍ୟାରେ ଛୋଟ ରେଷ୍ଟୁରାଣ୍ଟରେ ଭୋଜନ କଲାବେଳେ ସୋଫିଆଙ୍କୁ ବିବାହ ପ୍ରସ୍ତାବ ଦେଲେ। ସୋଫିଆ ମଧ୍ୟ ତାଙ୍କଠାରୁ ତାହାହିଁ ଆଶା କରୁଥିଲେ। ତେବେ ଏଥିପାଇଁ ସୋଫିଆ କିଛି ସମୟ ନେଇଥିଲେ। କାରଣ ତାଙ୍କ ଭିତରେ ବସା ବାନ୍ଧିଥିଲା କାର୍ଲୋଙ୍କ ଭାବମୂର୍ତ୍ତି। ଚେଷ୍ଟାକରି ମଧ୍ୟ ସେ ନିଜ ଭିତରୁ କାର୍ଲୋଙ୍କୁ ପରିତ୍ୟାଗ କରିପାରୁ ନଥିଲେ।

କାର୍ଲୋଙ୍କର କିଛି ବ୍ୟବସାୟିକ କାର୍ଯ୍ୟ ପଡ଼ିବାରୁ ସେ ସୋଫିଆଙ୍କୁ ନେଇ ହଲିଉଡ୍ ଗଲେ। ସେମାନେ ବିଭରଲି ହିଲ୍ସ ହୋଟେଲରେ ରହୁଥିଲେ। ହଲିଉଡ୍‌ରେ ସୋଫିଆ, କାରୀଙ୍କ ସହିତ କାମ କଲେ। ଏଇ ରହଣିକାଳ ମଧ୍ୟରେ ସୋଫିଆଙ୍କ ପାଖକୁ ପ୍ରତିଦିନ କାରୀ ପୁଷ୍ପଗୁଚ୍ଛ ଉପହାର ପଠାଉଥିଲେ। କାର୍ଲୋଙ୍କୁ ଏସବୁ ଅସହ୍ୟ ବୋଧ ହେଉଥିଲା। ତଥାପି କିଛି କହିପାରୁ ନଥିଲେ। ଏସବୁକୁ ଲକ୍ଷ୍ୟ କରୁଥିଲେ ସୋଫିଆ। ଦିନେ ସୋଫିଆ ନିଜ ମନର କଥା ଖୋଲି ବସିଲେ କାର୍ଲୋଙ୍କ ପାଖରେ। ଅର୍ଥାତ୍ ସେ ତାଙ୍କୁ ଭଲ ପାଆନ୍ତି। ତାଙ୍କ ସନ୍ତାନର ମା' ହେବାକୁ ଚାହାନ୍ତି ଏବଂ ସେମାନଙ୍କର ଏକ ଘର ମଧ୍ୟ ଚାହାନ୍ତି, ଯାହାକୁ ଏକ ପରିପୂର୍ଣ୍ଣ ସଂସାର କହିହେବ। କାର୍ଲୋ ସବୁ ଶୁଣୁଥିଲେ, କିଛି ବି କହିନଥିଲେ।

ତେବେ ସେମାନେ ବେଲ୍-ଏୟାର-ହୋଟେଲରେ ରହୁଥିବା ବେଳେ ଏକ ଅଚାନକ ଘଟଣା ଘଟିଥିଲା। ସେଦିନ ସମ୍ବାଦପତ୍ରରେ ବାହାରିଥିବା ଲଭେଲା ପାର୍ସନଙ୍କ ସ୍ତମ୍ଭଟି ପଢ଼ି ନିଜ ଭିତରେ ହଜି ଯାଇଥିଲେ ସୋଫିଆ। କାର୍ଲୋ ସମ୍ବାଦଟି ପଢ଼ିଥିଲେ। ପରେ ପରେ ସେ ନିଜ ସ୍ତ୍ରୀକୁ ଡାଇଭର୍ସ କରିଥିଲେ। ଖୁବ୍ ଶୀଘ୍ର ସେମାନଙ୍କ ବିବାହ ସଂଘଟିତ ହୋଇଯିବ ବୋଲି କେହି କେବେ କଳ୍ପନା କରିନଥିଲେ।

କାରୀ ମଧ୍ୟ ସୋଫିଆର ଦୀର୍ଘଜୀବନ କାମନା କରି ତାଙ୍କୁ ଶେଷଥର ପାଇଁ ସସ୍ନେହ ଚୁମ୍ବନଟିଏ ଦେଇଥିଲେ। ସୋଫିଆଙ୍କ ସ୍ୱପ୍ନ ସଫଳ ହେଲା। ସେ ଦୁଇଟି ପୁତ୍ର ସନ୍ତାନକୁ ଜନ୍ମ ଦେଇଥିଲେ, ଜୁନିଅର କର୍ଲୋପଣ୍ଟି ଏବଂ ଏଡଓ୍ୱାର୍ଡୋ। ସୋଫିଆ ସୁଖୀ ହୋଇଥିଲେ। ତେବେ ଭୁଲିପାରି ନଥିଲେ ସେହି ଦିନଟିକୁ, ଯାହା ତାଙ୍କ ପାଇଁ ଥିଲା ଆନନ୍ଦର ଦିନ ଏବଂ ଯନ୍ତ୍ରଣାର ଦିନ। ସେଦିନ ସୋଫିଆଙ୍କର ସୁଟିଙ୍ଗ ଥିଲା କାରୀଙ୍କ ସହିତ। ଏକ ବିବାହ ସିନ୍ ସୁଟିଙ୍ଗ ହେଉଥାଏ। ବିବାହ ପରେ କାରୀ ସୋଫିଆର ହାତକୁ ସ୍ନେହରେ ଚୁମ୍ବନ ଦେଇଥିଲେ। ସୋଫିଆଙ୍କୁ ଲାଗୁଥିଲା, ଯେମିତି ସେମାନେ ପ୍ରକୃତରେ ବିବାହ କରି ଫେରିଛନ୍ତି। ବାସ୍ତବ କ୍ଷେତ୍ରରେ ସୋଫିଆଙ୍କ ବିବାହ ସାତ ବର୍ଷରୁ କାର୍ଲୋଙ୍କ ସହିତ ଅନୁଷ୍ଠିତ ହୋଇ ପାରିଥିଲା। ତଥାପି ସ୍ମୃତି ଭିତରେ ବଞ୍ଚି ରହିବାକୁ ପସନ୍ଦ କରୁଥିଲେ ସୋଫିଆ।



# ଛଳନାମୟୀ ପ୍ରେମିକା ଜୋସେଫିନ୍ (ଫ୍ରାନ୍ସ)

ବିଶ୍ୱ ଇତିହାସରେ ଏକ ବହୁଚର୍ଚ୍ଚିତ ନାମ ଜୋସେଫିନ୍। ନେପୋଲିୟନଙ୍କ ପାଇଁ ଏଇ ମହିଳା ଜଣକ ବିଶ୍ୱ ଇତିହାସରେ ଏକ ଗୌରବମୟ ଆସନର ଅଧିକାରିଣୀ ହୋଇ ପାରିଥିଲେ। କିନ୍ତୁ ପ୍ରତିଦାନରେ ସେ ନିଜ ସ୍ୱାମୀଙ୍କୁ ଦେଇଥିଲେ କ'ଣ ? କେବଳ ପ୍ରତାରଣା...ଛଳନା... ! ନେପୋଲିୟନ ଯୁଦ୍ଧ କ୍ଷେତ୍ରରେ ଯେତେବେଳେ ନିଜ ସ୍ତ୍ରୀର ଫଟୋଚିତ୍ରକୁ ବାରମ୍ବାର ଚୁମ୍ବନ ଦେଇ ଅଧିର ହୋଇ ପଡୁଥିଲେ, ସେତେବେଳେ ଜୋସେଫିନ୍ ଜଣେ ଅନାମଧେୟ ଚାକର ସହିତ ପ୍ରେମ ପାର୍ବଣରେ ବ୍ୟସ୍ତ ଥିଲେ।

ବିଚିତ୍ର ପୃଥିବୀରେ ବୈଚିତ୍ରମୟୀ ହେଉଛି ନାରୀ। କେତେବେଳେ ସେ କେଉଁ ରୂପ ଧାରଣ କରେ, ସହଜରେ ବୁଝିହୁଏନା। ଏମିତି ଏକ ନାରୀ ହେଉଛନ୍ତି ଜୋସେଫିନ୍। ନାରୀ ଜଗତରେ ସେ ଏକ ଅଭିଶାପ ହୋଇପାରନ୍ତି, ସେଥିପ୍ରତି ତାଙ୍କର ଖାତିର ନାହିଁ। ନିଜ ସ୍ୱାର୍ଥ ପାଇଁ ସେ ସବୁକିଛି କରିପାରନ୍ତି। ଏପରିକି ନିଜ ସ୍ୱାମୀଙ୍କୁ ମଧ୍ୟ ଧୋକା ଦେଇପାରନ୍ତି। ଅତୃପ୍ତ ଯୌନ ଆକାଙ୍କ୍ଷାର ସେ ଏକ ମୂର୍ତ୍ତିମତୀ ଅଭିଶାପ। ଏଇ ବହୁଚର୍ଚ୍ଚିତ ନାରୀଙ୍କର ପ୍ରେମ, ପ୍ରତାରଣା ଏବଂ ଅଭିଶପ୍ତ ଜୀବନ ସମ୍ପର୍କରେ.....

ଜୋସେଫିନ୍‌ଙ୍କ ପୁରାନାମ ମେରୀ ରୋଜ ଜୋସେଫିନ୍। ଜନ୍ମହେଲା ବେଳେ ଜୋସେଫିନ୍‌ଙ୍କ ପରିବାରରେ ଆନନ୍ଦ ଖେଳି ଯାଇଥିଲା। ମାତ୍ର ଯେତେବେଳେ ଜନ୍ମକୁଣ୍ଡଳୀ ଗଣନା ଆରମ୍ଭ ହୋଇଥିଲା, ସେତେବେଳେ ସମସ୍ତଙ୍କ ମୁହଁ ଶୁଖିଯାଇ ଥିଲା। ଜ୍ୟୋତିଷ ଘୋଷଣା କରିଥିଲେ, ଜୋସେଫିନ୍ ଦିନେ ନା ଦିନେ ଫ୍ରାନସ୍‌ର ରାଣୀ ହେବେ। ତେବେ ତାହା ଅଳ୍ପ ସମୟ ପାଇଁ। ଜ୍ୟୋତିଶଙ୍କର ଏ ଘୋଷଣାକୁ ସମସ୍ତେ କୌତୁକ ଭାବି ହସରେ ଉଡ଼ାଇ ଦେଇଥିଲେ।

ଅତି ସାଧାରଣ ପରିବାରରେ ପାଳିତା କନ୍ୟା ଜୋସେଫିନ୍ ହେବ ଫ୍ରାନ୍‌ସର ସର୍ବମୟ କର୍ତ୍ତୀ। ଅବିଶ୍ୱାସର ଯଥେଷ୍ଟ ସମ୍ଭାବନା ରହିଥିଲା।

ଜୋଲେଫିନ୍‌ର ବାପା ଜ୍ୟୋତିଷଙ୍କ ଗଣନାକୁ ଏକ ପରିହାସ ବୋଲି ଧରି ନେଇଥିବା ବେଳେ ତାଙ୍କର ମା' କିନ୍ତୁ ଗଭୀର ଚିନ୍ତିତ ହୋଇ ପଡ଼ିଥିଲେ। ଗଣକ ବାରମ୍ବାର ତାଙ୍କୁ ସେହି ଗୋଟିଏ ବିଷୟ ପ୍ରକାଶ କରିଥିଲେ। ବିଶ୍ୱାସ ଅବିଶ୍ୱାସର ବଳୟ ଭିତରେ ମା' ତାଙ୍କର ଅବଗାହନ କରୁଥିଲେ। ତଥାପି ମନ ଭିତରେ ସ୍ୱପ୍ନ ଥିଲା, ଜୋସେଫିନ୍ କେବେ ଫ୍ରାନ୍‌ସର ସାମ୍ରାଜ୍ଞୀ ହେବେ ?

ଜୋସେଫିନ୍ ଦାସୀର କନ୍ୟା ଥିଲେ। ଫ୍ରାନ୍‌ସର ଜନୈକ ଯୋଦ୍ଧାଙ୍କଦ୍ୱାରା ତାଙ୍କ ଦାସୀଠାରୁ ସେ ଜନ୍ମ ଗ୍ରହଣ କରିଥିଲେ। ୱେଷ୍ଟଇଣ୍ଡିଜ୍‌ର ମାର୍ଟିନିକ୍ ଦ୍ୱୀପରେ ତାଙ୍କର ଜନ୍ମ ହୋଇଥିଲା। ଗଣନା ବେଳେ ଜୋସେଫିନ୍‌ଙ୍କ ବାପା ଜ୍ୟୋତିଷଙ୍କ ଗଣନାକୁ ଏକ ପ୍ରକାର ତୋଷାମଦ ବୋଲି ଧରି ନେଇଥିଲେ। ବୟସ ହେଲାପରେ ତାଙ୍କ ପିତା ଜୋସେଫିନ୍‌ଙ୍କୁ ଫ୍ରାନ୍‌ସର ଜଣେ ସମ୍ଭ୍ରାନ୍ତ ସହିତ ବିବାହ କରାଇ ଦେଇଥିଲେ। ତାଙ୍କ ସ୍ୱାମୀଙ୍କ ନାମ ଭିସ୍‌କାଉଣ୍ଟ ଆଲେକଜାଣ୍ଡାର ବିଉହରନାଇ। ୧୭୭୯ରେ ଜୋସେଫିନ୍‌ଙ୍କ ବିବାହ ହୋଇଥିଲା। ଜୋସେଫିନ୍ ପ୍ରଥମେ ପ୍ରଥମେ ଆଲେକଜାଣ୍ଡାରଙ୍କ ପ୍ରେମରେ ପଡ଼ି ପରେ ତାଙ୍କୁ ବିବାହ କରିଥିଲେ। ତାଙ୍କର ଗୋଟିଏ ପୁତ୍ର ଏବଂ ଗୋଟିଏ କନ୍ୟା ମଧ୍ୟ ଜାତ ହୋଇଥିଲା।

୧୭୮୯ରେ ଆରମ୍ଭ ହୁଏ ଫରାସୀ ରାଷ୍ଟ୍ରବିପ୍ଳବ। ଗିଲୋଟିନରେ ଶେଷ ନିଶ୍ୱାସ ତ୍ୟାଗ କରିବାକୁ ପଡ଼ିଥିଲା ଚତୁର୍ଦ୍ଦଶ ଲୁଇ, ତାଙ୍କ ରାଣୀ ଏବଂ ଅନେକ ଅନୁଗତମାନଙ୍କୁ। ଏହି ଅନୁଗତମାନଙ୍କ ମଧ୍ୟରେ ଥିଲେ ଆଲେକଜାଣ୍ଡାର। ଜୋସେଫିନ୍‌ଙ୍କୁ ଜେଲ୍ ଦଣ୍ଡ ଭୋଗିବାକୁ ପଡ଼ିଥିଲା। ଜେଲ୍ ଭିତରେ ଜୋସେଫିନ୍ ଜଣେ ଫରାସୀ ଜେନେରାଲ ପଲବାରାଙ୍କୁ ନିଜ ପ୍ରେମ ଫାଶରେ ବାନ୍ଧି ପାରିଥିଲେ। ପରେ ବାରା ତାଙ୍କୁ ମୁକ୍ତ କରାଇ ନିଜ ଘରେ ରଖାଇଥିଲେ। ବାରାଙ୍କ କ୍ଷମତା ଏବଂ ପ୍ରତିପତ୍ତିର ସୁଯୋଗରୁ ଯଥେଷ୍ଟ ଆର୍ଥିକ ଫାଇଦା ଉଠାଇଥିଲେ ଜୋସେଫିନ୍। ଅଳ୍ପକାଳ ମଧ୍ୟରେ ଜୋସେଫିନ୍ ବହୁ ଅର୍ଥର ଅଧିକାରିଣୀ ହୋଇପାରିଥିଲେ। ବାରା ଏଥିରେ ଖୁବ୍ ଚିନ୍ତିତ ହୋଇପଡ଼ି ଥିଲେ। ବାରାଙ୍କ ଭାଷାରେ, "ଜୋସେଫିନ୍‌ଙ୍କୁ ଆଦୌ ବିଶ୍ୱାସ କରାଯାଇ ପାରେନା। ନିଜ ସ୍ୱାର୍ଥ ପାଇଁ ସେ ମଧ୍ୟ ନିଜ ପ୍ରେମିକକୁ ଗିଲୋଟିନ ମୁହଁକୁ ଠେଲିଦେଇ ପାରନ୍ତି।"

ଜୋସେଫିନ୍ ନିଜକୁ ଜଣକ ପାଖରେ ଆବଦ୍ଧ ରଖିବାକୁ ଚାହୁଁ ନଥିଲେ। ବାରାଙ୍କ ପାଖରେ ଥିଲାବେଳେ ସେ ମଧ୍ୟ ତାଙ୍କୁ ବନ୍ଧୁ ଏବଂ ଅନ୍ୟ ଉଚ୍ଚ ପଦପଦବୀର ଅଫିସରମାନଙ୍କ ସହିତ ଦୈହିକ ସମ୍ପର୍କ ରଖିଥିଲେ। ସେମାନଙ୍କ ମଧ୍ୟରେ ଥିଲେ ଜେନେରାଲ ହକ୍। ଜୋସେଫିନ୍ ଏକଦା ଜେନେରାଲ ହକ୍‌ଙ୍କର ଖୁବ୍ ନିକଟତର ହୋଇଥିଲେ। କେଉଁ ଏକ ଦୁର୍ବଳ ମୁହୂର୍ତ୍ତରେ ସେ ମଧ୍ୟ ହକ୍‌ଙ୍କୁ ପ୍ରସ୍ତାବ ଦେଇଥିଲେ ଯେ ତାଙ୍କ ସ୍ତ୍ରୀଙ୍କୁ ଡାଇଭର୍ସ କରି ସେ ଜୋସେଫିନ୍‌ଙ୍କୁ ବିବାହ କରନ୍ତୁ। କିନ୍ତୁ ହକ୍ ଭଲଭାବେ ଜୋସେଫିନ୍‌ଙ୍କୁ ଜାଣିଥିଲେ। ତେଣୁ ଚତୁରତାର ସହିତ ସେ ତାଙ୍କ ପ୍ରସ୍ତାବକୁ ଟାଳି ଦେଇଥିଲେ। ହକ୍‌ଙ୍କ ମତରେ ଜୋସେଫିନ୍‌ଙ୍କୁ କେବଳ ଉପଭୋଗ କରାଯାଇ ପାରେ, କିନ୍ତୁ ବିବାହ କରାଯାଇ ପାରେନା। କାରଣ ସେ ଭଲଭାବେ ଜାଣିଥିଲେ, ତାଙ୍କ ଘୋଡ଼ା ଜଗୁଆଳୀ ସହିତ ମଧ୍ୟ ଜୋସେଫିନ୍‌ଙ୍କର ସମ୍ପର୍କ ରହିଛି।

ଜୋସେଫିନ୍ ଆଶାର ନିଶାରେ ଯାଗାକୁ ଯାଗା ଘୁରି ବୁଲୁଥିଲେ। ଗୋଟିଏ ପତ୍ରରୁ ଆଉ ଗୋଟିଏ ପତ୍ରକୁ ଲମ୍ଫ ପ୍ରଦାନ କରୁଥିଲେ। ହେଲେ ମନଲାଖି ମଣିଷଟିଏ ପାଉନଥିଲେ। ସତ କହିବାକୁ ଗଲେ ସେ ଚାହୁଁଥିଲେ ଏକ ଧନୀ ଏବଂ କ୍ଷମତାଶାଳୀ ମଣିଷଟିଏ ଯିଏ କି ତାଙ୍କର ସ୍ୱାମୀ ହୋଇପାରିବ। ଯାହାଙ୍କ କାନ୍ଧ ଉପରେ ଚଢ଼ି ସେ ନିଜର ମନ ମୁତାବକ ଆଶା ପୂରଣ କରିପାରିବେ। ଏହିଭଳି ଏକ ପୁରୁଷର ସନ୍ଧାନରେ ଥିବା ବେଳେ, ଜୋସେଫିନ୍‌ଙ୍କ ଜଣେ ବନ୍ଧୁ ତାଙ୍କୁ ଖବର ଦେଲେ ଯେ ନେପୋଲିଅନ ହେଉଛନ୍ତି ତାଙ୍କର ସ୍ୱପ୍ନର ମଣିଷ। ଆହୁରି ସେ ମଧ୍ୟ ଅବିବାହିତ..... !!!

ଜୋସେଫିନ୍‌ଙ୍କ କ୍ଷୁଧିତ ଚକ୍ଷୁ ଘୁରି ବୁଲିଲା ନେପୋଲିଅନଙ୍କ ଉପରେ। ନେପୋଲିଅନ ଯେଉଁସବୁ ପାର୍ଟିକୁ ଯାଉଥିଲେ, ଜୋସେଫିନ୍ ଚେଷ୍ଟା କରୁଥିଲେ ତାଙ୍କ ସହିତ ଦୁଇପଦ କଥା ହେବା ପାଇଁ। ମାତ୍ର ବାରମ୍ବାର ବିଫଳ ହେବାରୁ ସେ ନେପୋଲିଅନଙ୍କୁ ନିଜ ହୃଦୟ ତଳର ବେଦନା ଜଣାଇ ଏକ ଚିଠି ଲେଖିଲେ। ଚିଠିର ମର୍ମ ଥିଲା ଏହା "ତମ ଲାଗି ଯେ ଭାବି ଭାବି ଦିନରାତି ଉନ୍ନିଦ୍ର, ତମେ ଥରେ ହେଲେ ତା' କଥା ଚିନ୍ତା କରୁନା। ଏହା ବଡ଼ ଅନ୍ୟାୟ। ଏଇ ଲଳନା ପ୍ରତି ଯଦି ତମ ମନରେ ବିନ୍ଦୁଏ ବି କରୁଣା ଥିବ, ତେବେ ନିଶ୍ଚୟ ଆସିବ।

ଅନ୍ତତଃ ଆସନ୍ତା କାଲିର ଲଞ୍ଚ୍ ପାଇଁ। ମୋର ଅନେକ କଥା କହିବାର ଅଛି। ଯେଣୁ ମୁଁ ତୁମକୁ କିଛି କହି ପାରିନି।"

ଏହି ଚିଠିଟି ନେପୋଲିଅନଙ୍କୁ ବିଚଳିତ କରି ପକାଇଥିଲା। ସେ ମନେ ପକାଇବାକୁ ଚେଷ୍ଟା କରୁଥିଲେ ଏଇ ସୁନ୍ଦରୀ ମହିଳା ଜଣକୁ। ସବୁକିଛି ଝାପ୍‌ସା ହୋଇ ଆଖି ଆଗରେ ଭାସି ଉଠୁଥିଲା। ଜୋସେଫିନ୍‌ଙ୍କ ଅନୁରୋଧ ରକ୍ଷା କରି ନେପୋଲିଅନ ଆସି ପହଞ୍ଚିଲେ ଜୋସେଫିନ୍‌ଙ୍କ ଭବନରେ। ସେଦିନ ଜୋସେଫିନ୍‌ଙ୍କ ଘରଟିର ଚେହେରା ବଦଳି ଯାଇଥିଲା, କେବଳ ଏଇ ଅତିଥିଙ୍କ ଆଗମନ ପାଇଁ। ଏଇ ଭବନରେ ପାଦଦେବା କ୍ଷଣି ନେପୋଲିଅନ ନିଜକୁ ଭୁଲି ଯାଇଥିଲେ। ମନେ ହେଉଥିଲା ଯେ ଯେମିତି ଏକ ଭିନ୍ନ ଜଗତରେ ପାଦ ଦେଇଛନ୍ତି। ଜୋସେଫିନ୍‌ଙ୍କ ହାବଭାବରୁ ଜଣାପଡୁଥିଲା, ସେ ଯେମିତି ଏକ ବିଶାଳ ସମ୍ପତ୍ତିର ଉତ୍ତରାଧିକାରିଣୀ। ଲଞ୍ଚ୍‌ପରେ ସେମାନେ ଡ୍ରଇଁରୁମରେ ବୁଲୁଥିବା ବେଳେ ଜୋସେଫିନ୍ ଜଣାଇଦେଲେ ଯେ ଇଟାଲୀର ସେନାବାହିନୀର ନେତୃତ୍ୱ ନେବାକୁ ଏକମାତ୍ର ଯୋଗ୍ୟ ବ୍ୟକ୍ତି ହେଉଛନ୍ତି ନେପୋଲିଅନ। ଏଥିପାଇଁ ଦରକାର ହେଲେ ସେ ମଧ୍ୟ ତାଙ୍କର ବନ୍ଧୁ ପଲବାରାଙ୍କୁ ପ୍ରବର୍ତ୍ତାଇବେ।

ଜୋସେଫିନ୍‌ଙ୍କ ବ୍ୟବହାର ମୁଗ୍ଧ କରିଥିଲା ନେପୋଲିଅନଙ୍କୁ। ସେ ଏହି ନାରୀର ମନ ଭିତରେ ଲୁଚି ରହିଥିବା କଦର୍ଯ୍ୟ ଲାଳସା ବିଷୟରେ ଜାଣିବାର ସୁଯୋଗ ପାଇନଥିଲେ। ଜୋସେଫିନ୍‌ଙ୍କୁ ନିଜର ଜଣେ ଦରଦୀ ବନ୍ଧୁ ଭାବରେ ଧରିନେଲେ ନେପୋଲିଅନ। ପଲ୍ ମଧ୍ୟ ମୁକ୍ତି ଚାହୁଁଥିବାରୁ ଜୋସେଫିନ୍‌ଙ୍କ ଦୃଷ୍ଟି ନିବଦ୍ଧ ହୋଇଥିଲା ନେପୋଲିଅନଙ୍କ ଉପରେ। ନେପୋଲିଅନ ମଧ୍ୟ ମନଇଚ୍ଛା ଅର୍ଥ ଅପବ୍ୟୟ କରି ଚାଲିଥିଲେ ଏଇ ବୈଚିତ୍ର୍ୟମୟୀ ମହିଳାଙ୍କ ପାଇଁ। ବାରା ନେପୋଲିଅନଙ୍କ ମନୋଭାବ ବିଷୟରେ ଅବଗତ ହୋଇ ତାଙ୍କୁ ଉପଦେଶ ଦେବାକୁ ଯାଇ ବିଫଳ ହୋଇଥିଲେ। କାରଣ ସେତେବେଳକୁ ନେପୋଲିଅନ ଏଇ ସୁନ୍ଦରୀ ତରୁଣୀର କାଲରେ ସମ୍ପୂର୍ଣ୍ଣଭାବେ ପ୍ରବେଶ କରିସାରିଥିଲେ। ବରଂ ସେ ଜୋସେଫିନ୍‌ଙ୍କୁ ସମର୍ଥନ କରି ପଲ୍‌ଙ୍କୁ କହିଥିଲେ - "ମୁଁ ଯେଉଁ ଦାମୀ ଉପହାରମାନ ଦେଇଛି, ସେ ସବୁ ଯଦି ଆମ ବିବାହର ଉପଢୌକନ ବୋଲି

ଧରିନିଆଯାଏ, ଆପଣଙ୍କର କିଛି ଆପତ୍ତି କରିବାର ଅଛି ?" ଆଶ୍ଚର୍ଯ୍ୟ ହୋଇଯାଇଥିଲେ ପଲ୍ ଏପରି କଥାରେ। ସେ କେବେ ଆଶା କରିନଥିଲେ, ନେପୋଲିଅନଙ୍କ ଠାରୁ ଏଭଳି ଏକ କଥା ଶୁଣିବେ ବୋଲି।

କଥାଟା ବହୁଦୂର ଆଗେଇ ଯାଇଥିବାରୁ ପଲ୍ ଆଉ ପଛକୁ ଫେରିବାକୁ ନେପୋଲିଅନଙ୍କୁ ନକହିଁ ବରଂ ଶୀଘ୍ର ବିବାହ କରିନେବାକୁ କହିଥିଲେ। ଏହାଦ୍ୱାରା ନେପୋଲିଅନଙ୍କର ମାନସିକ ସ୍ଥିରତା ଆସିପାରିବ ବୋଲି ମଧ୍ୟ ସେ ଉପଦେଶ ଦେଇଥିଲେ। ପରେ ଯେତେବେଳେ ଜୋସେଫିନ୍, ବାରାଙ୍କ ପାଖକୁ ଆସିଥିଲେ, ସେତେବେଳେ ତାଙ୍କୁ ପଲ୍ ଆଗୁଆ ବିବାହର ଅଭିନନ୍ଦନ ଜଣାଇଥିଲେ ଏବଂ ନିଜର ଜାଲରେ ନେପୋଲିଅନଙ୍କୁ ଫସାଇ ପାରିଥିବାରୁ ସେ ଜୋସେଫିନ୍‌ଙ୍କ ଚତୁରତାକୁ ପ୍ରଶଂସା କରିଥିଲେ। ମାତ୍ର ପଲ୍‌ଙ୍କୁ ସେ ଗଭୀର ଭାବେ ଭଲପାଆନ୍ତି ବୋଲି ଜଣାଇ ଏକପ୍ରକାର କୁମ୍ଭୀର କାନ୍ଦଣା ଆରମ୍ଭ କରିଦେଇଥିଲେ ଜୋସେଫିନ୍। ତାଙ୍କ ମତରେ ନେପୋଲିଅନଙ୍କୁ ସ୍ୱାମୀଭାବେ ଗ୍ରହଣ କରାଯାଇପାରେ, ମାତ୍ର ପ୍ରେମ କରାଯାଇପାରେନା। କାରଣ ସେ ହେଉଛନ୍ତି ନିମ୍ନରୁଚିର ଏବଂ ତାଙ୍କ ସମାସ୍କନ୍ଦ ନୁହଁନ୍ତି।

ଜୋସେଫିନ୍ ନେପୋଲିଅନଙ୍କ ସହିତ ଖୁବ୍ ସୁନ୍ଦର ଭାବେ ଅଭିନୟ କରିପାରୁଥିଲେ। ବିଚରା ନେପୋଲିଅନ କିଛି ବୁଝିପାରୁ ନଥିଲେ। କାରଣ ସେ ତାଙ୍କ ପ୍ରେମରେ ଅନ୍ଧ ଥିଲେ। ନେପୋଲିଅନ ତାଙ୍କ ବ୍ୟବହାର ଏବଂ ଉଦ୍ଦେଶ୍ୟ ସମ୍ବନ୍ଧରେ ଭଲଭାବେ ଅବଗତ ଥିଲେ ମଧ୍ୟ, ଜୋସେଫିନ୍‌ଙ୍କ ପ୍ରେମରୁ ସେ ନିଜକୁ ଦୂରେଇ ରଖିପାରୁ ନଥିଲେ। ଥରେ ଏକଥା ମଧ୍ୟ ନେପୋଲିଅନ ତାଙ୍କର ଜଣେ ଜେନେରାଲଙ୍କ ଆଗରେ କହିଥିଲେ - "ପ୍ରକୃତରେ ମୁଁ ତାଙ୍କୁ ଭଲପାଏନା। ଏପରିକି ସେହି ନାରୀ ପ୍ରତି ମୋର ତିଳେହେଲେ ବି ସମ୍ମାନ ନାହିଁ। ସେ ହେଉଛନ୍ତି ପ୍ରତାରଣାର ଏକ ମୂର୍ତ୍ତିମନ୍ତ ଦେବୀ। ତଥାପି ଏଇ ନାରୀ ଭିତରେ ଏମିତି କିଛି ଜିନିଷ ରହିଛି, ଯାହାକି ମୋତେ ତାରି ପ୍ରେମରେ ବାରମ୍ବାର ଅନ୍ଧ କରିଦିଏ। ପ୍ରେମ କଲାବେଳେ ମୁଁ ଅନୁଭବ କରେ ଜୋସେଫିନ୍ ହେଉଛନ୍ତି ବାସ୍ତବରେ ଜଣେ ଚିରନ୍ତନୀ ନାରୀ।"

କୋସେଫିନ୍‌ଙ୍କ ପ୍ରେମ ଅନ୍ଧ କରିଥିଲା ନେପୋଲିଅନଙ୍କୁ। କୋସେଫିନ୍‌ଙ୍କ ହୀନ ସ୍ୱାର୍ଥ ବିଷୟରେ ନେପୋଲିଅନଙ୍କୁ ତାଙ୍କ ଭାଇ ଲୁସି ବାରମ୍ବାର ସତର୍କ କରାଇଥିଲେ ମଧ୍ୟ ତାହାର କିଛି ଲାଭ ହୋଇନଥିଲା। କୋସେଫିନ୍ ଏବଂ ନେପୋଲିଅନ ଶେଷରେ ବିବାହ ବନ୍ଧନରେ ଆବଦ୍ଧ ହୋଇଥିଲେ ୧୭୯୬ ମସିହା ମାର୍ଚ୍ଚମାସ ୯ ତାରିଖରେ। ଏହିଦିନ କୋସେଫିନ୍ ନିଜକୁ ଗୋଟିଏ ପରୀ ଭଳି ସଜାଇ ମେୟରଙ୍କ ଅଫିସରେ ବିବାହ ରେଜିଷ୍ଟ୍ରେସନ ପାଇଁ ପହଞ୍ଚିଥିଲେ। ଅବଶ୍ୟ ଦୁଇଘଣ୍ଟା ବିଳମ୍ବରେ ଆସିଥିଲେ ନେପୋଲିଅନ। ୫ ମିନିଟ ମଧ୍ୟରେ ବିବାହ ସମାପନ ହୋଇଥିଲା। ଠିକ୍ ତିନିଦିନ ପରେ ଯୁଦ୍ଧକ୍ଷେତ୍ରକୁ ଡାକରା ଆସିଲା। ନେପୋଲିଅନ ଫେରିଯାଇଥିଲେ ଯୁଦ୍ଧକ୍ଷେତ୍ରକୁ। ହେଲେ କୋସେଫିନ୍ ରହିଲେ ପ୍ୟାରିସ୍‌ରେ।

କୋସେଫିନ୍ ଥିଲେ ଏକ ଭିନ୍ନ ରୁଚିର ମଣିଷ। ନେପୋଲଅନଙ୍କ ଅନୁପସ୍ଥିତିରେ ସେ ଆଦୌ ଚିନ୍ତିତ ନଥିଲେ। କାରଣ ସେ ପ୍ୟାରିସ୍‌ରେ ଜୀବନକୁ ପରିପୂର୍ଣ୍ଣ ଭାବରେ ଉପଭୋଗ କରି ଚାଲିଥିଲେ। ତାଙ୍କଠାରୁ ବୟସରେ ସାନ ହିପୋଲିଟ ଚାର୍ଲସ ନାମକ ଜଣେ ଯୁବକଙ୍କୁ ନିଜପ୍ରେମରେ ବାନ୍ଧି ପାରିଥିଲେ। ଘଟଣାଟି ପ୍ୟାରିସ୍‌ରେ ହଇଚଇ ସୃଷ୍ଟି କରିଥିଲା। ତଥାପି କୋସେଫିନ୍‌ଙ୍କ କୌଣସି କଥାକୁ ଭୃକ୍ଷେପ ନଥିଲା।

ନେପୋଲିଅନ ଯୁଦ୍ଧକ୍ଷେତ୍ରରୁ ପ୍ରତିଦିନ କୋସେଫିନ୍‌ଙ୍କ ପାଖକୁ ଚିଠି ଲେଖୁଥିଲେ। କାରଣ ଯୁଦ୍ଧକ୍ଷେତ୍ରରେ ନେପୋଲିଅନଙ୍କ ଆଖି ଆଗରେ ଭାସି ଉଠୁଥିଲା କୋସେଫିନ୍‌ଙ୍କ ଆଖି ଦୁଇଟି। ସେ ମନେ ପକାଉଥିଲେ ଏଇ ଛଳନାମୟୀ ନାରୀଟିକୁ। କିନ୍ତୁ କୋସେଫିନ୍ ତାଙ୍କୁ କୌଣସି ଚିଠିର ଉତ୍ତର ଦେଉନଥିଲେ କିମ୍ବା କ୍ୱଚିତ୍ ଉତ୍ତର ଦେଉଥିଲେ। କାରଣ ସେ ଚାର୍ଲସ ସହିତ ପ୍ରେମ ବ୍ୟାପାରରେ ଏଭଳି ମଜ୍ଜିଯାଇଥିଲେ ଯେ ଚିଠି ଲେଖିବାକୁ ତାଙ୍କର ସମୟ ନଥିଲା। ଯୁଦ୍ଧକ୍ଷେତ୍ରରେ ନେପୋଲିଅନ ନିଜ ସ୍ତ୍ରୀଙ୍କ କଥା ମନେ ପକାଇ ମାନସିକ ଭାରସାମ୍ୟ ବେଳେ ବେଳେ ହରାଇ ବସୁଥିଲେ। ଶେଷକୁ ଏପରି ହେଲା, ସେ ତାଙ୍କର ଜଣେ ସହକାରୀଙ୍କ ମାଧ୍ୟମରେ କୋସେଫିନ୍‌ଙ୍କ ପାଖକୁ ସମ୍ବାଦ ଦେଇ ପଠାଇଲେ। ଏହି ସହକାରୀ କୁନଟ ସହିତ କୋସେଫିନ୍‌ଙ୍କୁ ଆସିବା ପାଇଁ ନେପୋଲିଅନ ଲେଖିଥିଲେ।

ଜୋସେଫିନ୍ ବାଧ୍ୟ ହୋଇଥିଲେ ମିଲାନ ଯିବାପାଇଁ। ଅବଶ୍ୟ ସେ ଏକା ଯାଇନଥିଲେ। ସାଙ୍ଗରେ ତାଙ୍କର ପ୍ରେମିକ ଚାର୍ଲସ ମଧ୍ୟ ଥିଲେ। ମିଲାନ୍‌ରେ ଜୋସେଫିନ୍ ପହଞ୍ଚିବା ସମ୍ବାଦ ପାଇବା କ୍ଷଣି ନେପୋଲିଅନ ଆନନ୍ଦରେ ନାଚି ଉଠିଥିଲେ। ସେ ଏପରିକି ଜୋସେଫିନ୍‌ଙ୍କ ପାଖରେ ବସିଥିବା ଚାର୍ଲସଙ୍କୁ ମଧ୍ୟ ଜାଣିପାରି ନଥିଲେ। ଜୋସେଫିନ୍‌ଙ୍କ ଅନୁରୋଧରେ ସେ ଚାର୍ଲସଙ୍କୁ ଡିନର ଟେବୁଲକୁ ନିମନ୍ତ୍ରଣ କରିଥିଲେ। ମାତ୍ର ଦୁଇଦିନ ପରେ ନେପୋଲିଅନଙ୍କୁ ଫେରିଯିବାକୁ ପଡ଼ିଥିଲା ଯୁଦ୍ଧକ୍ଷେତ୍ରକୁ। ଯୁଦ୍ଧକ୍ଷେତ୍ରରୁ ଫେରି ସେ ମିଲାନ୍‌ରେ ଖୋଜିଥିଲେ ଜୋସେଫିନ୍‌ଙ୍କୁ। ମାତ୍ର ଜୋସେଫିନ୍ ସେତେବେଳକୁ ଫେରି ଆସିଥିଲେ ପ୍ୟାରିସ ଏବଂ ଚାର୍ଲସଙ୍କ ସହିତ ଗଭୀର ପ୍ରେମରେ ମଜ୍ଜି ଯାଇଥିଲେ।

ଦୁଃଖରେ ଲୁହ ଗଡ଼ାଇବା ଛଡ଼ା ନେପୋଲିଅନ୍‌ଙ୍କର ଅନ୍ୟଗତି ନଥିଲା। ପରେ ଏଥିପାଇଁ ସେ ଜୋସେଫିନ୍‌ଙ୍କୁ ବହୁ ଭର୍ତ୍ସନା କରିଥିଲେ। ମାତ୍ର କ୍ଷମାଭିକ୍ଷା କରିବାରୁ ସେ ଜୋସେଫିନ୍‌ଙ୍କୁ ଛାଡ଼ି ଦେଇଥିଲେ। ମିଶରଠାରେ ନେପୋଲିଅନ ଜାଣିବାକୁ ପାଇଲେ ଯେ ଜୋସେଫିନ୍ କେବଳ ତାଙ୍କ ସହିତ ଅଭିନୟ କରି ଚାଲିଛନ୍ତି। ନିଜକୁ କୌଣସି ପ୍ରକାରେ ସାନ୍ତ୍ୱନା ଦେଲେ ନେପୋଲିଅନ। ୧୭୯୯ ନଭେମ୍ବର ୧୧ ତାରିଖରେ ସେ ଫ୍ରାନ୍‌ସର ପ୍ରଥମ କନ୍‌ସୁଲ ହେଲେ। ରାଜପ୍ରାସାଦର ଉପର ମହଲାରେ ପ୍ରାୟ ଏକ ପ୍ରକାର ବନ୍ଦୀ ଅବସ୍ଥାରେ ରହିଲେ ଜୋସେଫିନ୍। ତାଙ୍କୁ ଭେଟିବାକୁ ଆସୁଥିବା ବ୍ୟକ୍ତିମାନଙ୍କୁ ଯାଞ୍ଚ୍ କରି ଛାଡୁଥିଲେ ନେପୋଲିଅନ। ନେପୋଲିଅନଙ୍କ ମତରେ ଜୋସେଫିନ୍‌ଙ୍କୁ କେବଳ ପ୍ରେମ କରାଯାଇ ପାରେ, ହେଲେ ବିଶ୍ୱାସ କରାଯାଇ ପାରେନା।

୧୮୦୪ ଡିସେମ୍ବର ୨ ତାରିଖରେ ନେପୋଲିଅନ ଫ୍ରାନ୍‌ସର ସମ୍ରାଟ ଭାବେ ଅଭିଷିକ୍ତ ହେଲେ। ରାଣୀର ସୁଯୋଗ ପାଇଲେ ଜୋସେଫିନ୍। ପରିବାରର ବିରୋଧ ସତ୍ତ୍ୱେ ନେପୋଲିଅନ ଜୋସେଫିନ୍‌ଙ୍କୁ ଏହି ସୁଯୋଗ ଦେଇଥିଲେ। ସେ ମଧ୍ୟ ମନେ ମନେ ସ୍ଥିରକରି ନେଇଥିଲେ ଜୋସେଫିନ୍‌ଙ୍କୁ ଡାଇଭର୍ସ କରିବା ପାଇଁ। ଇତି ମଧ୍ୟରେ ଜୋସେଫିନ୍‌ଙ୍କର ବଡ଼ ଭୁଲ ହେଲା, ସେ ନିଜର ଦୁର୍ବଳତା ଲୁଚାଇବାକୁ ଯାଇ ରାଜପ୍ରାସାଦରେ ଚର୍ଚ୍ଚା ଆରମ୍ଭ କରିଦେଲେ ଯେ ନେପୋଲିଅନଙ୍କର ପୁରୁଷତ୍ୱ ନାହିଁ। କିନ୍ତୁ ସେ ଜାଣିନଥିଲେ ଯେ ନେପୋଲିଅନଙ୍କର

ବହୁ ନାରୀଙ୍କ ସହିତ ସମ୍ପର୍କ ରହିଛି ବୋଲି ଏବଂ ସେମାନଙ୍କର ସନ୍ତାନସନ୍ତତି ଅଛି ବୋଲି। ୧୮୦୯ ନଭେମ୍ବର ୩୦ ତାରିଖରେ ନେପୋଲିଅନ ଡାଇଭର୍ସ କଲେ ଜୋସେଫିନ୍‌ଙ୍କୁ। ଜୋସେଫିନ୍ ମଧ୍ୟ ନିଜ ସହିତ ବହୁ ଧନସମ୍ପତ୍ତି ନେଇଥିଲେ।

ନେପୋଲିଅନ ବିବାହ କରିଥିଲେ ମେରୀ ଲୁଇଙ୍କୁ। ୧୮୧୧ରେ ତାଙ୍କର ଏକ ପୁତ୍ର ମଧ୍ୟ ଜାତ ହୋଇଥିଲା। ଏତେ ପରେ ମଧ୍ୟ ସେ ଜୋସେଫିନ୍‌ଙ୍କୁ ଭୁଲିପାରି ନଥିଲେ। ୧୮୧୪ରେ ନେପୋଲିଅନଙ୍କୁ ଏଲ୍‌ବା ଦ୍ୱୀପକୁ ନିର୍ବାସିତ କରାଯାଇଥିଲା। କୌଣସି ପ୍ରକାରେ ସେ ସେଠାରୁ ପଳାଇ ଆସିଥିଲେ। ତାଙ୍କର ପ୍ରଥମ ଭୁଲ ହେଲା ସେ ଆସିଥିଲେ ଜୋସେଫିନ୍ (ଡାଇଭର୍ସ ପରେ) ରହୁଥିବା ମାଲମେସୌଁକୁ। ଏଇ ପ୍ରାସାଦରେ ଜୋସେଫିନ୍ ପ୍ରାଣତ୍ୟାଗ କରିଥିଲେ ଦୁଃଖରେ। ମୃତ୍ୟୁ ବେଳେ ତାଙ୍କ ପାଟିରୁ କେବଳ ବାହାରିଥିଲା - "ନେପୋଲିଅନ... ଏଲ୍‌ବା"।

ଏଇ ପ୍ରାସାଦରେ ନେପୋଲିଅନ ଜୋସେଫିନ୍‌ଙ୍କ ପାଇଁ ପାଗଳପ୍ରାୟ ହୋଇ ଘଣ୍ଟା ଘଣ୍ଟା ଧରି ଚିତ୍କାର କରିଥିଲେ। ତାଙ୍କର ଚିତ୍କାର କେହି ଶୁଣିନଥିଲେ। ୧୮୨୧ ମେ ୫ ତାରିଖ ଦିନ ପୁନର୍ବାର ନେପୋଲିଅନଙ୍କୁ ନିର୍ବାସନ ଦଣ୍ଡ ଦିଆଗଲା। ନେପୋଲିଅନ ନିଜର ଶୋକସନ୍ତାପମୟ ଶେଷ ଜୀବନ କଟାଇଥିଲେ। କେବଳ ପ୍ରେୟସୀ ପତ୍ନୀ ଜୋସେଫିନ୍‌ଙ୍କ ସ୍ମୃତିକୁ ଭାଳି ଭାଳି। ମୃତ୍ୟୁ ବେଳକୁ ତାଙ୍କ ପାଟିରେ ଲାଗି ରହିଥିଲା ଜୋସେଫିନ୍‌ଙ୍କ ନାମ। ଧିରେ ଧିରେ ଆଖିପତା ମୁଦି ହୋଇ ଆସିଥିଲା......।



# ପ୍ରଧାନମନ୍ତ୍ରୀ ଲାଏଡ୍ ଜର୍ଜଙ୍କ ପ୍ରେମ ଜଗତ

ନାମକରା ବ୍ରିଟିଶ ରାଷ୍ଟ୍ରନୀତିଜ୍ଞ ଏବଂ ପ୍ରଧାନମନ୍ତ୍ରୀମାନଙ୍କ ମଧ୍ୟରେ ଡେଭିଡ୍ ଲଏଡ୍ ଜର୍ଜ ହେଉଛନ୍ତି ଅନ୍ୟତମ। ଉଇନ୍‌ଷ୍ଟନ ଚର୍ଚ୍ଚିଲ ଏବଂ ଲର୍ଡ ରିଡ଼ିଙ୍ଗ ଥିଲେ ତାଙ୍କର ପରମ ବନ୍ଧୁ। ଇଂଲଣ୍ଡର ଏକ ସମ୍ଭ୍ରାନ୍ତ ପରିବାରର କନ୍ୟା ମାର୍ଗାରେଟଙ୍କୁ ସେ ବିବାହ କରିଥିଲେ। ମାର୍ଗାରେଟ ପାର୍ଟି, ସମ୍ଭ୍ରାନ୍ତ ପରିବେଶ ମଧ୍ୟରେ ବୁଡ଼ି, ରହୁଥିବା ବେଳେ ତାଙ୍କ ପତି ଥିଲେ ଜଣେ ନୈଷ୍ଠିକ ରକ୍ଷଣଶୀଳ ଖ୍ରୀଷ୍ଟିଆନ।

ଜର୍ଜ ଥିଲେ ଜଣେ ସୁବକ୍ତା। ତାଙ୍କ ବକ୍ତୃତା ଶୁଣି ଉପସ୍ଥିତ ଜନତା ମନ୍ତ୍ରମୁଗ୍ଧ ହୋଇଯାଉଥିଲେ। ବ୍ରିଟିଶର ଅର୍ଥମନ୍ତ୍ରୀ ଥିବାବେଳେ ସେ ଥରେ ରବିବାସରୀୟ ପ୍ରାର୍ଥନା ସଭାରେ ଯୋଗ ଦେଇଥାନ୍ତି। ଚର୍ଚ୍ଚର ପାଦ୍ରୀ ତାଙ୍କୁ ଉପସ୍ଥିତ ଜନତାଙ୍କୁ ସମ୍ବୋଧିତ କରିବା ପାଇଁ ଅନୁରୋଧ କରିଥିଲେ। ଏହି ପ୍ରାର୍ଥନା ସଭାର ବକ୍ତୃତା ଜଣେ ଯୁବତୀ ଉପରେ ବେଶ୍ ପ୍ରଭାବ ବିସ୍ତାର କରିଥିଲା। ସେହି ଯୁବତୀଟି ଥିଲା ଲଣ୍ଡନର ଜଣେ ବାରିଷ୍ଟରଙ୍କ କନ୍ୟା ଫ୍ରାନ୍‌ସିସ ଷ୍ଟିଭେନସନ। ଫ୍ରାନ୍‌ସିସ ଥିଲେ ଉଇମ୍ବଲଡନ ଗାର୍ଲସ୍ ସ୍କୁଲର ଜନୈକା ଶିକ୍ଷୟିତ୍ରୀ। ଫ୍ରାନ୍‌ସିସଙ୍କ କଅଁଳ ବୟସର ସ୍ୱପ୍ନରେ ବାରମ୍ବାର ଦେଖାଦେଇଥିଲେ ଜର୍ଜ।

> ବିଶ୍ୱ ଇତିହାସରେ ଆଦର୍ଶ ପତି ଏବଂ ଆଦର୍ଶ ପତ୍ନୀର ଅଭାବ ନାହିଁ। ହେଲେ ଆଦର୍ଶ ପ୍ରେମିକଟିଏ ସେଠି ଖୋଜି ପାଇବା ବଡ଼ କଷ୍ଟକର। ଏମିତି ଏକ ନିର୍ମଳ ପ୍ରେମର ଉପାସକ ହେଉଛନ୍ତି ବ୍ରିଟିଶ ପ୍ରଧାନମନ୍ତ୍ରୀ ଡେଭିଡ଼ ଲାଏଡ୍ ଜର୍ଜ, ଯେକି ପତ୍ନୀଙ୍କର ମୃତ୍ୟୁପରେ ଜୀବନର ଅପରାହ୍ନରେ ଅର୍ଥାତ୍ ୮୦ ବର୍ଷ ବୟସରେ ଅପେକ୍ଷାରତ ପ୍ରେମିକାକୁ ବିବାହ କରିଥିଲେ। ବିବାହ ପୂର୍ବରୁ ଏହି ପ୍ରେମିକାଠାରୁ ତାଙ୍କର ଏକ କନ୍ୟା ସନ୍ତାନ ମଧ୍ୟ ଜାତ ହୋଇଥିଲା। ଭିନ୍ନ ନାମରେ ପରିଚିତ ଏହି ସନ୍ତାନଟି ବହୁ ବିଳମ୍ବରେ ଅର୍ଥାତ୍ ଲଏଡଙ୍କ ମୃତ୍ୟୁପରେ ଜାଣିବାକୁ ପାଇଥିଲେ ଯେ ବ୍ରିଟିଶ ପ୍ରଧାନମନ୍ତ୍ରୀ ହେଉଛନ୍ତି ତା'ର ପିତା....।

ଫ୍ରାନ୍‌ସିସ କେବେ ଆଶାକରି ନଥିଲା, ସେ ଦିନେ ଜର୍ଜଙ୍କର ଅତି ନିକଟତର ହେବ ବୋଲି। ଗ୍ରୀଷ୍ମ ଛୁଟି ପାଖେଇ ଆସିବାରୁ ସ୍କୁଲର ହେଡ୍‌ମିଷ୍ଟ୍ରେସଙ୍କ ପାଖକୁ ଜର୍ଜ ଖବର ପଠାଇଥିଲେ। ତାଙ୍କ କନ୍ୟା ମେଗାନ୍‌ର କିଛିଟା ବିଷୟରେ ଦୁର୍ବଳତା ରହିଯାଇ ଥିବାରୁ ସେ ଜଣେ ଟିଉଟର ଖୋଜୁଥିଲେ। ପ୍ରଧାନ ଶିକ୍ଷୟିତ୍ରୀ ଯାହାକୁ ଟିଉଟର ଭାବେ ମନରେ ସ୍ଥିର କରିଥିଲେ ସେ ପୂର୍ବରୁ ଟିଉସନ ଧରିନେଇ ଥିବାରୁ ଏହାର ଭାର ପଡ଼ିଥିଲା ଫ୍ରନ୍‌ସିସଙ୍କ ଉପରେ। ପ୍ରଧାନ ଶିକ୍ଷୟିତ୍ରୀଙ୍କ ପ୍ରସ୍ତାବରେ ଫ୍ରାନ୍‌ସିସ ତତ୍‌କ୍ଷଣାତ୍ ରାଜି ହୋଇଗଲେ।

ବ୍ରିଟିଶ ଅର୍ଥମନ୍ତ୍ରୀଙ୍କ କାର୍‌ରେ ଫ୍ରାନ୍‌ସିସ ତାଙ୍କ ଓଏଲ୍‌ମସ୍ଥିତ ବାସଭବନରେ ପହଞ୍ଚିଥିଲେ। ଦିନେ ଦୁଇଦିନ ମଧ୍ୟରେ ମେଗାନ୍‌ର ପଢ଼ା ଆରମ୍ଭ ହୋଇଥିଲା। ଏଇଠି ମଧ୍ୟ ଫ୍ରାନ୍‌ସିସ ନିଜର ମଧ୍ୟାହ୍ନ ଭୋଜନ ଗ୍ରହଣ କରୁଥିଲେ। ମଧ୍ୟାହ୍ନ ଭୋଜନକୁ ଅନେକ ସମୟରେ ବ୍ରିଟେନର ମାନ୍ୟଗଣ୍ୟ ବ୍ୟକ୍ତିମାନେ ଆସୁଥିଲେ। ବ୍ରିଟିଶ ପାର୍ଲାମେଣ୍ଟର କାର୍ଯ୍ୟକ୍ରମ ଗ୍ରୀଷ୍ମକାଳରେ ବନ୍ଦ ରହିବାରୁ ଘରକୁ ଫେରିଥିଲେ ଜର୍ଜ। ତାଙ୍କର ଏକ ତୈଳଚିତ୍ର ପ୍ରସ୍ତୁତି ପାଇଁ ସାଥିରେ ଆସିଥିଲେ ଓଏଲ୍‌ସରୁ ବିଖ୍ୟାତ ଚିତ୍ରକାର ଉଇଲୟମ୍‌ସ। କିନ୍ତୁ ଜର୍ଜ କୌଣସି ସ୍ଥାନରେ ସ୍ଥିର ଭାବରେ ବସିପାରୁ ନଥିବାରୁ ଅସୁବିଧା ହେଉଥିଲା। ତାଙ୍କୁ ଏକାଦିକ୍ରମେ କିଛି ସମୟ ବସାଇ ରଖିବା ପାଇଁ ମାର୍ଗାରେଟ ନିଜ କନ୍ୟା ମେଗାନ୍ ଓ ଫ୍ରାନ୍‌ସିସ ଉପରେ ଦାୟିତ୍ୱ ଦେଇଥିଲେ। ଏଇ ଅବସରରେ ଫ୍ରାନ୍‌ସିସ କିଛିଟା ନିକଟତର ହେବାର ସୁଯୋଗ ପାଇଥିଲେ। ସେ ମଧ୍ୟ ଜର୍ଜଙ୍କ ପରିବାରର ପାର୍ଟି, ପିକ୍‌ନିକ୍ ଆଦିରେ ଅଂଶଗ୍ରହଣ କରୁଥିଲେ। ଛୁଟିପରେ ଫ୍ରାନ୍‌ସିସ ଫେରିଯାଇଥିଲେ ନିଜ କର୍ମକ୍ଷେତ୍ରକୁ।

ମେଗାନ୍‌ଙ୍କୁ ସ୍କୁଲରୁ ନେବାକୁ ଆସିବା ବେଳେ ପ୍ରତିଦିନ ଫ୍ରାନ୍‌ସିସ ସହିତ ଜର୍ଜଙ୍କର ଦେଖା ହେଉଥିଲା। ସେ ମଧ୍ୟ ଫ୍ରାନ୍‌ସିସଙ୍କୁ କିଛିଟା ଲେଖାଲେଖି କାମ ଧରାଇଥିଲେ। ପ୍ରତି ରବିବାର ସନ୍ଧ୍ୟାରେ ଫ୍ରାନ୍‌ସିସ ନିମନ୍ତ୍ରିତ ହେଉଥିଲେ ଜର୍ଜଙ୍କ ପରିବାରକୁ। ଇଷ୍ଟର ଛୁଟିରେ ଜର୍ଜ, ଫ୍ରାନ୍‌ସିସଙ୍କୁ କିଛିଟା କାମ ଦେଇଥିଲେ। ଠିକ୍ ସମୟରେ ତାହା ପାଇଥିଲେ। ପାର୍ଲାମେଣ୍ଟରେ କାର୍ଯ୍ୟକ୍ରମ ଶୁଣିବା ପାଇଁ ଜର୍ଜ, ଫ୍ରାନ୍‌ସିସଙ୍କୁ ନିମନ୍ତ୍ରଣ କରିଥିଲେ। ଏହି ଅବସରରେ ଉଭୟ କିଛି ସମୟ

ଏକାନ୍ତରେ ଗପିବାର ସୁଯୋଗ ପାଇଥିଲେ। ଜର୍ଜ ଚାହୁଁଥିଲେ ଫ୍ରାନ୍ସିସଙ୍କୁ ନିଜ ସେକ୍ରେଟାରୀ ଭାବେ ନିଯୁକ୍ତି କରିବା ପାଇଁ। ବାସ୍ତବରେ ଜର୍ଜ ନିଜ ହୃଦୟର ନିଭୃତ କନ୍ଦରରେ ଫ୍ରାନ୍ସିସଙ୍କୁ ଅନେକ ପୂର୍ବରୁ ସ୍ଥାନ ଦେଇ ସାରିଥିଲେ। ଇତି ମଧ୍ୟରେ ଉଭୟ ଉଭୟଙ୍କୁ ଭଲଭାବରେ ବୁଝିବାର ସୁଯୋଗ ପାଇଥିଲେ। ତେବେ ଗୋଟିଏ କଥା ପରିଷ୍କାର ଥିଲା ଯେ ଜର୍ଜ ନିଜ ସ୍ତ୍ରୀ ମାର୍ଗାରେଟଙ୍କୁ ଡାଇଭର୍ସ କରିବାକୁ ରାଜି ନଥିଲେ କିମ୍ବା ଫ୍ରାନ୍ସିସଙ୍କୁ ଛାଡ଼ିବାକୁ ପ୍ରସ୍ତୁତ ନଥିଲେ।

ଏ ସମୟ ଥିଲା ଫ୍ରାନ୍ସିସଙ୍କ ପାଇଁ ଚରମ ପରୀକ୍ଷାର ସମୟ। ଏ ବିଷୟରେ ଅଧିକ ଭାବିବା ପାଇଁ ଏବଂ କିଛିଟା ଶାନ୍ତି ପାଇବା ପାଇଁ ଫ୍ରାନ୍ସିସ ସ୍କଟଲାଣ୍ଡ ଯାଇଥିଲେ। କାରଣ ସେଠାରେ ତାଙ୍କର ବଏଫ୍ରେଣ୍ଡ ଥିଲେ ଯେ କି ଜଣେ ଉଚ୍ଚ ପଦବୀଧାରୀ ସରକାରୀ ଅଫିସର। ଏଥର କିନ୍ତୁ ତାଙ୍କଠାରୁ ଫ୍ରାନ୍ସିସ ପୂର୍ବବର୍ତ୍ତୀ ସ୍ନେହ-ପ୍ରେମ ପାଇନଥିଲେ। ତାଙ୍କ ଭିତରେ ବାରମ୍ବାର ତୁହାଇ ତୁହାଇ ଡାକୁଥିଲେ ଜର୍ଜ, ଏ ବିଷୟରେ ସେ ଜର୍ଜଙ୍କର ଉପଦେଶ ଗ୍ରହଣ କରିବାକୁ ଉଚିତ୍ ମନେକଲେ। ଜର୍ଜ ମଧ୍ୟ ତାଙ୍କୁ ଲେଖିଲେ, ଯାହା ତାଙ୍କୁ ଭଲ ଲାଗୁଛି କରନ୍ତୁ। ସେ କେବେ ତାଙ୍କ ପଥରେ ବାଧା ସୃଷ୍ଟି କରିବେନି। ଫ୍ରାନ୍ସିସ କ'ଣ କରିବେ କିଛି ସ୍ଥିର କରିପାରିଲେ ନାହିଁ। ହଠାତ୍ ଏହି ସମୟରେ ଜର୍ଜଙ୍କଠାରୁ ସେ ଏକ ଚିଠି ପାଇଲେ ଅତିଶୀଘ୍ର ଲଣ୍ଡନ ଫେରିଯିବା ପାଇଁ। କାରଣ ଜର୍ଜ କେତେକ ସମସ୍ୟା ନେଇ ଘୋର ବିବ୍ରତ ଥିଲେ। ସେ ଫ୍ରାନ୍ସିସଙ୍କର ସାହାଯ୍ୟ ଚାହୁଁଥିଲେ। ଶେଷକୁ ଫ୍ରାନ୍ସିସ ସ୍ଥିର କଲେ, ଜର୍ଜଙ୍କ ପାଇଁ ସେ ନିଜକୁ ଉତ୍ସର୍ଗ କରିବେ। ଏ ବିଷୟରେ ସେ ନିଜ ମା'ଙ୍କର ପରାମର୍ଶ ଲୋଡ଼ିଲେ। ହେଲେ ଫ୍ରାନ୍ସିସଙ୍କ ମାତା ଏହାର ଘୋର ବିରୋଧ କଲେ ଏବଂ ଅପମାନିତ କରିବାକୁ ପଛାଇଲେ ନାହିଁ। ଜର୍ଜ ମଧ୍ୟ ଏ ବିଷୟରେ ତାଙ୍କ ମାତାଙ୍କୁ ବୁଝାଇବାକୁ ଯାଇ ହତାଶ ହେଲେ।

ଜର୍ଜ ବ୍ରିଟେନ୍‌ର ପ୍ରଧାନମନ୍ତ୍ରୀ ହେଲେ। ଫ୍ରାନ୍ସିସ ହେଲେ ତାଙ୍କର ପ୍ରାଇଭେଟ ସେକ୍ରେଟାରୀ। ଉଭୟଙ୍କ ମଧ୍ୟରେ ଉତ୍ତମ ବୁଝାମଣା ଥିଲା। କେହି କାହାକୁ ମୁହୂର୍ତ୍ତଟିଏ ସୁଦ୍ଧା ଛାଡ଼ିପାରୁ ନଥିଲେ। ପ୍ରତ୍ୟେକ କାର୍ଯ୍ୟରେ ଜର୍ଜ ମଧ୍ୟ ଫ୍ରାନ୍ସିସଙ୍କ ସାହାଯ୍ୟ ଲୋଡୁଥିଲେ।

୧୯୨୨ରେ ଜର୍ଜ କେନିଭାଠାରେ ଥାଆନ୍ତି। ଏକ ବିବାଦୀୟ ନିଷ୍ପତ୍ତି ତାଙ୍କ ସାମନାକୁ ଆସିଲା। ସେ କିଛି ସ୍ଥିରକରି ନପାରି ଫ୍ରାନ୍‌ସିସଙ୍କୁ ଲେଖିଲେ, ସେ ହେଉଛନ୍ତି ଏକମାତ୍ର ମହିଳା ଯେ କି ତାଙ୍କୁ ଉଚିତ୍ ମାର୍ଗ ଦେଖାଇ ପାରିବେ। ଜର୍ଜ ଏବଂ ଫ୍ରାନ୍‌ସିସଙ୍କ ସମ୍ପର୍କ ବିଷୟ ସେତେବେଳେ ସମସ୍ତେ ଜାଣି ସାରିଥିଲେ। ସ୍ତ୍ରୀ, କନ୍ୟା ମାର୍ଗାରେଟ ଏବଂ ମେଗାନ୍ ଏହି ଘଟଣା ସହିତ ଭଲଭାବେ ପରିଚିତ ଥିଲେ। ତଥାପି ସେମାନେ ତାଙ୍କ ବିରୁଦ୍ଧରେ ପଦଟିଏ ଉଚ୍ଚାରଣ କରିପାରି ନଥିଲେ। କାରଣ ମାର୍ଗାରେଟ ଭଲଭାବେ ଜାଣିଥିଲେ ଯେ ଜର୍ଜ ତାଙ୍କୁ ପଛେ ଛାଡ଼ିଦେବେ ହେଲେ ଫ୍ରାନ୍‌ସିସଙ୍କୁ ତ୍ୟାଗ କରିପାରିବେ ନାହିଁ।



# ଚାର୍ଲି ଚାପଲିନ-ଉନା (ଇଂଲଣ୍ଡ)

ଛୋଟ ମଣିଷଟିଏ। ନଥିଲା ତାର ସେମିତି ନୟନଲୋଭା ଚେହେରା। ତଥାପି ତାର ବ୍ୟକ୍ତିତ୍ୱ ନିକଟରେ ବନ୍ଧା ପଡ଼ିଥିଲେ ଅନେକ ନାରୀ। ଋତୁ, ମାସ, ବାର ଭଳି ଗୋଟିଏ ପରେ ଗୋଟିଏ ସୁନ୍ଦରୀ ଆସୁଥିଲେ ଏବଂ ଯାଉଥିଲେ। ହେଲେ ତା' ଜୀବନର ଗତିପଥକୁ ସମ୍ପୂର୍ଣ୍ଣ ପରିବର୍ତ୍ତନ କରି ଦେଇଥିଲା ଜଣେ। ସେଇଜଣକ ଥିଲା ତାର ପ୍ରେୟସୀ...ପତ୍ନୀ...ଜନମଜନମର ସାଥୀ...

ଏଇ ଛୋଟ ମଣିଷଟି ଥିଲା ଚାର୍ଲି ଚାପଲିନ୍। ଇଂଲଣ୍ଡ ମାଟିରେ ଜନ୍ମଗ୍ରହଣ କରିଥିଲେ ସେ। ବାଲ୍ୟ ଜୀବନ ଥିଲା ତାଙ୍କର ଅଶ୍ରୁଳ। ତାଙ୍କ ବାପା, ମା' ଶିଶୁପୁତ୍ରକୁ ଛାଡ଼ି ଚାଲିଯାଇଥିଲେ। ମା' ମଧ୍ୟ ପାଗଳ ହୋଇ ମାନସିକ ଚିକିତ୍ସାଳୟରେ ଭର୍ତ୍ତି ହୋଇଥିଲେ। ବାଧ୍ୟ ହୋଇ ଚାର୍ଲିଙ୍କୁ ଆଶ୍ରୟ ନେବାକୁ ପଡ଼ିଥିଲା ଅନାଥାଶ୍ରମରେ। ଦୀର୍ଘଦିନ ବେକାର ରହିଲା ପରେ ସେ ଇଂଲଣ୍ଡର ଏକ ଥିଏଟର କମ୍ପାନୀରେ ଚାକିରୀ ପାଇଥିଲେ। ଏହି ଥିଏଟର ଦଳ ସହିତ ସେ ୧୯୧୩ରେ ଆମେରିକା ଯିବାର ସୁଯୋଗ ପାଇଥିଲେ। ସେତେବେଳେ ନିର୍ବାକ ଚଳଚ୍ଚିତ୍ରର ଯୁଗ। ଜଣେ ଫିଲ୍ମ ପ୍ରଯୋଜକ ତାଙ୍କୁ ଗୋଟିଏ ଜୋକର ଭୂମିକାରେ ଅଭିନୟ କରିବାକୁ ଚୁକ୍ତିବଦ୍ଧ କରିଥିଲେ। ତା'ପରେ ଚାର୍ଲି ଆଉ ପଛକୁ ଫେରି ଚାହିଁନାହାନ୍ତି। ୧୯୨୦ ପର୍ଯ୍ୟନ୍ତ ସେ ୬୯ଟି ଚଳଚ୍ଚିତ୍ରରେ ଅଭିନୟ କଲାପରେ ଚଳଚ୍ଚିତ୍ର ପ୍ରଯୋଜନା ପାଇଁ ଆଗେଇ ଆସିଲେ।

> ତାଙ୍କ ଜୀବନରେ ଆସିଥିଲେ ଅନେକ ନାରୀ। ହେଲେ କେହି ଜଣେ ପତ୍ନୀର ଦରଜା ନିଭାଇ ପାରିନଥିଲେ। ଅବଶ୍ୟ ଜଣକୁ ଛାଡ଼ି। ସେହି ଜଣକ ହେଉଛି ଉନା। ଚାର୍ଲିଙ୍କ 'ଉନା' କେବଳ ପତ୍ନୀ ନୁହନ୍ତି, ସେ ତାଙ୍କର ସ୍ୱପ୍ନର ସୁଗନ୍ଧ.... ତାଙ୍କ ସୁଖ ସମୃଦ୍ଧିର ଚାବିକାଠି। ଚାର୍ଲିଙ୍କ ଚିନ୍ତାଚେତନା ପ୍ରେମପାର୍ବଣ ସବୁଠି ଥିଲା ଉନାଙ୍କର ଶୀତଳ ସ୍ପର୍ଶ। ସେଥିରେ ପତ୍ନୀ ଆଉ ପ୍ରେମିକାର ଏକ ସମ୍ମିଳିତ ସ୍ୱର...।

ଚାର୍ଲିଙ୍କ ନିଖୁଣ ଅଭିନୟ ଅନେକଙ୍କୁ ମୁଗ୍ଧ ଏବଂ ଚକିତ କରିଥିଲା । ପ୍ରଚୁର ଧନସମ୍ପତ୍ତିର ଅଧିକାରୀ ହୋଇଥିଲେ ଚାର୍ଲି । ତାଙ୍କର ସମ୍ପତ୍ତି ପ୍ରଲୁବ୍ଧ କରିଥିଲା ଅନେକ ସୁନ୍ଦରୀଙ୍କୁ । ୧୯୧୬ରେ ସେ ଭଲ ପାଇବସିଲେ ୧୪ ବର୍ଷୀୟା ମିଡରେଡ୍ ହାରିସଙ୍କୁ । ୧୯୧୮ ଅକ୍ଟୋବର ୨୩ରେ ବିବାହ ହୋଇଥିଲା । ମନୋମାଳିନ୍ୟ ଘଟିବାରୁ ୧୯୨୦ରେ ଚାର୍ଲି ତାଙ୍କୁ ପ୍ରଚୁର ଧନ ଦେଇ ଡାଇଭର୍ସ କରିଥିଲେ । ହାରିସ୍ ମଧ୍ୟ ଏହା ଚାହିଁଥିଲେ । ପରେ ପରେ ତାଙ୍କ ଜୀବନରେ ଦେଖା ଦେଇଥିଲେ ଲିଟାଗ୍ରେ । ଏଇ ଝିଅଟି ସହିତ ସେ ୧୯୧୪ରୁ ପରିଚିତ ଥିଲେ । ବିବାହ ପୂର୍ବରୁ ଲିଟା ତାଙ୍କ ସନ୍ତାନର ଜନନୀ ହୋଇଥିଲେ । ବାଧ୍ୟହୋଇ ଚାର୍ଲି ମେକ୍ସିକୋରେ ୧୯୨୪ ନଭେମ୍ବର ୨୪ରେ ଲିଟାଙ୍କୁ ବିବାହ କରିଥିଲେ । ଚାର୍ଲିଙ୍କର ଦୁଇଟି ପୁତ୍ର ସନ୍ତାନ ମଧ୍ୟ ଜନ୍ମ ନେଇଥିଲେ । ବୈବାହିକ ଜୀବନର ସମସ୍ତ ଗୁପ୍ତ ରହସ୍ୟ ଲିଟା ପ୍ରକାଶ କରିଦେବାରୁ ଚାର୍ଲି ବାଧ୍ୟ ହୋଇ ତାଙ୍କୁ ଡାଇଭର୍ସ କରିଥିଲେ । ଅବଶ୍ୟ ପ୍ରଚୁର ଧନସମ୍ପତ୍ତି ସେ ଲିଟାଙ୍କୁ ଦେଇଥିଲେ । ମାତ୍ର ୩ ବର୍ଷ ପାଇଁ ସେମାନଙ୍କର ବିବାହ ସ୍ଥାୟୀ ହୋଇଥିଲା ।

ପରେ ପରେ ଦୀର୍ଘ ନ'ବର୍ଷର ନୀରବତା । ୧୯୩୬ରେ ସେ ବିବାହ କରନ୍ତି ୨୫ ବର୍ଷୀୟା ସୁନ୍ଦରୀ ପଲିଟ ଗଡାଡଙ୍କୁ । ଚାର୍ଲି ଏଥର ଆଶା କରିଥିଲେ ତାଙ୍କର ବିବାହିତ ଜୀବନ ସୁଧୁରିଯିବ । ମାତ୍ର ଗଡାଡଙ୍କ ଅନଧିକାର ଚର୍ଚ୍ଚା ତଥା ତାଙ୍କର ଅତ୍ୟଧିକ ଲିପ୍ସା ୧୯୪୨ରେ ଆଉ ଏକ ଡାଇଭର୍ସ ଡାକିଆଣିଲା । ପରେ ପରେ ଚାର୍ଲିଙ୍କ ଜୀବନରେ ଆଉ ଏକ ଝଡ଼ର ସୂତ୍ରପାତ କରନ୍ତି ଅଭିନେତ୍ରୀ ଜୋଆନ୍‌ବାରୀ । ଏହି ଅଭିନେତ୍ରୀ ଜଣକ ନିଜ ଝିଅ 'କାରୋଲ୍ ଆନ୍‌ର୍' ପିତା ବୋଲି ଚାର୍ଲିଙ୍କୁ ଦାବି କରି ବସନ୍ତି । ଘଟଣା କୋର୍ଟକୁ ଯାଏ । ରକ୍ତ ପରୀକ୍ଷା ପରେ ଜଣାପଡ଼େ କାରୋଲ୍ ଚାର୍ଲିଙ୍କର ଝିଅ ନୁହଁନ୍ତି । ତଥାପି କାରୋଲ୍‌ର ଲାଳନ ପାଳନ ପାଇଁ ଚାର୍ଲିଙ୍କୁ ମୂଲ୍ୟ ଦେବାକୁ ହୁଏ ।

୧୯୪୨ରେ ଚାର୍ଲିଙ୍କ ଜୀବନରେ ଦେଖାଦିଅନ୍ତି ନାଟ୍ୟକାର ଇଲଜିନ 'ଓ' ନିଲଙ୍କ କନ୍ୟା 'ଉନା' । ଉନା ଆସିଥିଲେ ତାଙ୍କ ଚଳଚ୍ଚିତ୍ରରେ ଅଭିନୟ କରିବା ପାଇଁ । ଦୁଃଖର କଥା ଏହି ଚଳଚ୍ଚିତ୍ରଟି ମୁକ୍ତି ପାଇପାରିଲା ନାହିଁ । କିନ୍ତୁ ଚାର୍ଲିଙ୍କ ଜୀବନଧାରା ଏକ ନିର୍ଦ୍ଦିଷ୍ଟ ପଥରେ ଆଗେଇଗଲା, କେବଳ ଏହି

୧୭ ବର୍ଷୀୟ କନ୍ୟା ପାଇଁ। ସେତେବେଳକୁ ଚାର୍ଲି ଚାପଲିନ୍‌ଙ୍କ ବୟସ ୫୪ ବର୍ଷ। ୧୯୪୩ ଜୁନ୍ ୧୬ ତାରିଖରେ ସେମାନଙ୍କ ବିବାହ ଅନୁଷ୍ଠିତ ହେଲା। ସମସ୍ତେ ଆଶା କରୁଥିଲେ ଏ ବିବାହ ମଧ୍ୟ କ୍ଷଣସ୍ଥାୟୀ ହେବ। ମାତ୍ର ଉନାଙ୍କ ସାନିଧ୍ୟ ଏବଂ ସହଯୋଗ ଚାର୍ଲିଙ୍କୁ ଜଣେ ଦକ୍ଷ ନିର୍ମାତା-ନିର୍ଦ୍ଦେଶକରେ ପରିଣତ କରିଥିଲା। ଚାର୍ଲି ଜୀବନରେ ଯାହାକିଛି ପାଇଥିଲେ, କେବଳ ଏଇ ନାରୀଜଣଙ୍କ ପାଇଁ। ମୃତ୍ୟୁ ପର୍ଯ୍ୟନ୍ତ ଦୀର୍ଘ ୩୪ ବର୍ଷ ଧରି ସେମାନଙ୍କ ବୈବାହିକ ଜୀବନ ସ୍ଥାୟୀ ହୋଇଥିଲା। ସେମାନେ ୫ଟି ସନ୍ତାନର ଜନକ ଜନନୀ ହୋଇଥିଲେ। ଉନା ଅନ୍ୟ ସପତ୍ନୀଜାତ ୩ଟି ସନ୍ତାନ ସମେତ ୮ଟି ସନ୍ତାନଙ୍କୁ ନିଜର ଜ୍ଞାନ କରି ଲାଳନ ପାଳନ କରିଥିଲେ।

ଚାର୍ଲିଙ୍କ ଜୀବନରେ ଉନାଙ୍କ ଆବିର୍ଭାବ ଏକ ନବଦିଗନ୍ତର ଉନ୍ମୋଚନ କରିଥିଲା। ସମସ୍ତ ଝଡ଼ଝଞ୍ଜାରେ ଉନା ସ୍ୱାମୀଙ୍କ ପାଖରେ ଛିଡ଼ା ହୋଇଥିଲେ। ଆମେରିକାରେ ଜନ୍ମ ହୋଇଥିଲେ ମଧ୍ୟ ଉନା ଏହାର ନାଗରିକତ୍ୱ ଛାଡ଼ିବାକୁ ପଛେଇ ନଥିଲେ। ୧୯୪୭ରେ ଚାର୍ଲି 'ମନସିଅର ଭରଡୋ' ନାମକ ଏକ ଫିଲ୍ମ କରିଥିଲେ ଯେଉଁଥିରେ ଆମେରିକୀୟମାନଙ୍କର ଅସଂଯତ ଜୀବନର ଚିତ୍ର ରହିଥିଲା। ଏ ଘଟଣାରେ ଆମେରିକାର ସମ୍ବାଦପତ୍ର ଏବଂ ଫିଲ୍ମ ସେନ୍‌ସର ବୋର୍ଡ ତାଙ୍କର ଘୋର ବିରୋଧ କରିଥିଲେ। ଆମେରିକାନମାନେ କମ୍ୟୁନିଜିମ୍‌କୁ ଘୃଣା କରୁଥିବାରୁ ଚାର୍ଲି ଏହାର ଶୀକାର ହେଲେ। ସେମାନଙ୍କର ଏକପ୍ରକାର ବଦ୍ଧମୂଳ ଧାରଣା ହୋଇଯାଇଥିଲା ଯେ ଚାର୍ଲି ହେଉଛନ୍ତି କମ୍ୟୁନିଜିମ୍‌ର ସମର୍ଥକ। ଏଥିପାଇଁ ଚାର୍ଲିଙ୍କୁ ବହୁ କ୍ଷତି ସହିବାକୁ ପଡ଼ିଲା। ଆମେରିକାରେ ଚାର୍ଲି ଘୋର ବିରୋଧର ସମ୍ମୁଖୀନ ହେଲେ। ଉଭୟ ଉନା ଓ ଚାର୍ଲି ୟୁରୋପ ଅଭିମୁଖେ ଯାତ୍ରା କରିଥିଲେ ମଧ୍ୟ ଆମେରିକା ସରକାର ତାଙ୍କର ଭିସା ରଦ୍ଦ କରି ଦେଇଥିଲେ। କିଛି ସମୟ ପାଇଁ ଉଭୟଙ୍କୁ ସମୁଦ୍ର ମଧ୍ୟରେ ରହିବାକୁ ପଡ଼ିଥିଲା। ଏକପ୍ରକାର ତାଙ୍କୁ ୟୁରୋପ ଯିବାକୁ ବାଧ୍ୟ କରାଯାଇଥିଲା। ସ୍ୱାମୀଙ୍କ ପାଇଁ ଉନା ମଧ୍ୟ ଆମେରିକାର ନାଗରିକତ୍ୱ ପରିତ୍ୟାଗ କରି ଏକ ଆଦର୍ଶ ନାରୀର ଭୂମିକା ନିଭାଇଥିଲେ।

ଚାର୍ଲି ଦମ୍ପତି ସୁଇଜରଲ୍ୟାଣ୍ଡରେ ବାସକଲେ। ଏଠି ସେ ମ୍ୟୁଜିକ୍ ଉପରେ ଅଧିକ ଗୁରୁତ୍ୱ ଦେଇଥିଲେ ମଧ୍ୟ କେତୋଟି ଫିଲ୍ମ ତିଆରି କରିଥିଲେ। ସମସ୍ତ

ଆମେରିକାବାସୀ ଚାର୍ଲିଙ୍କ ଫିଲ୍ମ ଉପରୁ ବ୍ୟାନ୍ ଉଠାଇଦେବା ପାଇଁ ସ୍ୱର ଉତ୍ତୋଳନ କରିବାରୁ ୧୯୭୨ରେ ଆମେରିକାର ଆକାଡେମୀ ଚାର୍ଲିଙ୍କୁ ସମ୍ମାନିତ କରିବା ପାଇଁ ସ୍ଥିର କଲା । କାରଣ, ଆମେରିକାବାସୀ ଚାର୍ଲିଙ୍କ ଫିଲ୍ମର 'ଫ୍ୟାନ୍' କହିଲେ ଭୁଲ ହେବନାହିଁ । ଚାର୍ଲିଙ୍କୁ 'ଅସ୍କାର' ସମ୍ମାନ ପ୍ରଦାନ କରାଯାଇଥିଲା । ପୁନର୍ବାର ଆମେରିକା ଫେରିବାରେ ଉନାଙ୍କୁ ପ୍ରଶ୍ନ କରାଯିବାରୁ ସେ ହସି ହସି କହିଥିଲେ- **'ସେ ମାର୍କୀନ ନାଗରିକ ନୁହଁନ୍ତି । ତାଙ୍କ ସ୍ୱାମୀଙ୍କ ଦେଶ ହେଉଛି ତାଙ୍କର ଦେଶ' । ଚାର୍ଲିଙ୍କୁ ଏହି ଅବସରରେ ପଚରାଯିବାରୁ ସେ କହିଥିଲେ -'ବିଶ୍ୱ ମତେ ବହୁତ କିଛି ଦେଇଛି ଏବଂ ଅଳ୍ପ କିଛି ନେଇଛି । ତେବେ 'ଉନା' ହେଉଛି ମୋ ପାଇଁ ଆମେରିକାର ସବୁଠୁଁ ବଡ଼ ଉପହାର' ।**

ସମଗ୍ର ବିଶ୍ୱ ଚାର୍ଲିଙ୍କୁ ପାଇ ଗର୍ବ ଅନୁଭବ କରିଥିଲେ । ୧୯୭୫ରେ ବ୍ରିଟେନର ରାଣୀ ତାଙ୍କୁ 'ନାଇଟ' ଉପାଧି ପ୍ରଦାନ କରିଥିଲା । ଏହି ଉପାଧି ଗ୍ରହଣ କରିବାକୁ ଗଲାବେଳେ ତାଙ୍କ ଆଗରେ ଥିଲେ 'ଉନା' । ଚାର୍ଲି ମୁହୂର୍ତ୍ତକ ପାଇଁ ଉନାଙ୍କ ସମ୍ମୁଖରୁ ଅପସରି ଯିବାକୁ ଚାହୁଁନଥିଲେ । ସଦାସର୍ବଦା ସେ ଚାର୍ଲିଙ୍କ ପାଖେ ପାଖେ ଥିଲେ । ନାରୀତ୍ୱ କ'ଣ ସେ କେବଳ ଉନା ପାଖରୁ ଶିଖିଥିଲେ ଏବଂ ଜୀବନର ଶେଷ ପର୍ଯ୍ୟନ୍ତ ସେ ନାରୀକୁ ସମ୍ମାନ ଦେଇ ଆସିଥିଲେ । ନିଜ ଆତ୍ମଜୀବନୀରେ ସେ ଲେଖିଛନ୍ତି 'ଉନାକୁ ଆଗରେ ଦେଖିଲେ ମୋ ଭିତରେ ପ୍ରେମର ଏକ ପ୍ରବାହ ହଠାତ୍ ସୃଷ୍ଟି ହୋଇଯାଏ, ଯାହା ମୋତେ ଜୁଡୁବୁଡୁ କରିଦିଏ' । ଉନା କ୍ୱଚିତେ ଚାର୍ଲିଙ୍କ ବିଷୟରେ ମନ୍ତବ୍ୟ ଦେଇଛନ୍ତି । ଥରେ ତାଙ୍କ ପିତା ଇଉଜିନ୍ ଓ ନିଲ୍ ବାଧ୍ୟ କରିବାରୁ ଉନା କହିଥିଲେ - 'ଜଣେ ପୁରୁଷ ଗୋଟିଏ ନାରୀକୁ ଯାହା ଯାହା ଦେଇପାରେ, ତାହା ହିଁ ଚାର୍ଲି ତାଙ୍କୁ ଦେଇଛନ୍ତି । ଅର୍ଥାତ୍ ଚାର୍ଲି ହେଉଛନ୍ତି ଉନାଙ୍କ ଦୃଷ୍ଟିରେ ଜଣେ ସମ୍ପୂର୍ଣ୍ଣ ପୁରୁଷ.... ଜଣେ ପୂର୍ଣ୍ଣ ମଣିଷ' ।



# ଏଡ଼ୱାଡ଼-ଲିଲି

ବିଶ୍ୱ ଇତିହାସରେ ଭିକ୍ଟୋରିଆ ଯୁଗର ମଧ୍ୟବର୍ତ୍ତୀ କାଳ ଥିଲା ବିଳାସ ବ୍ୟସନ ତଥା ଉପଭୋଗର ଅଧ୍ୟାୟ। ପ୍ରେମ ଥିଲା ରାଜବଂଶ ପାଇଁ ଏକ ଖିଆଲ। ନାରୀ ଥିଲା କାମନାର କାବ୍ୟ। ବିବାହିତ ପୁରୁଷ ହେଉ କିମ୍ବା ନାରୀ ହେଉ, ସେମାନଙ୍କ ସହିତ କାମ, କ୍ରୀଡ଼ା ଥିଲା, ତତ୍କାଳୀନ ରାଜ ରକ୍ତର ଏକ ବିଚିତ୍ର ସମ୍ଭ୍ରାନ୍ତ ରୁଚି। ଏପରି ଏକ ଅସ୍ୱାଭାବିକ ଖିଆଲ ବିରୁଦ୍ଧରେ କେହି ମଧ୍ୟ ସ୍ୱର ଉତ୍ତୋଳନ କରୁ ନଥିଲେ। ଗୋଟିଏ ପରେ ଗୋଟିଏ ପରିଧାନ ପରିବର୍ତ୍ତନ କଲାପରି ସେମାନେ ବଦଳାଇ ଚାଲିଥିଲେ ପ୍ରେମିକ ଏବଂ ପ୍ରେମିକା। ଏହି ପ୍ରକ୍ରିୟାର ଶୀର୍ଷରେ ଥିଲେ କିଙ୍ଗ ଏଡ଼ୱାଡ଼ ସପ୍ତମ।

> ଡିନର ଟେବୁଲରେ ପାଖାପାଖି ବସିଥିଲେ ଲିଲି ଏବଂ ପ୍ରିନ୍ସ ଅଫ୍ ୱେଲସ। ଲଣ୍ଡନର ଭାବୀ ସମ୍ରାଟଙ୍କ ସହିତ ଡିନର ଟେବୁଲରେ ବସିଥିବା ବେଳେ ଲିଲି ନିଜକୁ ଭୁଲି ଯାଇଥିଲେ। ଏ ପ୍ରକାର ବ୍ୟବସ୍ଥା ପୂର୍ବ କଳ୍ପିତ ଥିଲା ଏବଂ ଏଥିପାଇଁ ଧନ୍ୟବାଦର ପାତ୍ର ହେଉଛନ୍ତି ରାଜକୁମାରଙ୍କ ଅନ୍ତରଙ୍ଗ ବନ୍ଧୁ ସାର୍ ଆଲେନ ୟଙ୍ଗ। ପ୍ରିନ୍ସ ଅଫ୍ ୱେଲସ, ଆଲବର୍ଟ ଏହି ଅସାମାନ୍ୟ ସୁନ୍ଦରୀ ଲିଲିଙ୍କୁ ମୁହୂର୍ତ୍ତଟିଏ ବି ଛାଡ଼ିପାରୁ ନଥିଲେ।

ପ୍ରେମ ଥିଲା ବ୍ରିଟିଶ ରାଜବଂଶ ପାଇଁ ଏକ ବିଚିତ୍ର ବିଳାସ। ଏକାଧିକ ପୁରୁଷ ଏବଂ ନାରୀ ଉପଭୋଗ ଥିଲା ସେମାନଙ୍କ ପାଇଁ ଏକପ୍ରକାର ସୌଖୀନ ଶୀକାର। ରାଣୀ ଭିକ୍ଟୋରିଆ ମଧ୍ୟ ଏଥିରୁ ମୁକ୍ତି ପାଇ ନଥିଲେ। ତାଙ୍କର ଜ୍ୟେଷ୍ଠ ସନ୍ତାନ ହେଉଛନ୍ତି ଏଡ଼ୱାଡ଼ ଆଲବର୍ଟ। ସିଂହାସନରେ ଅଭିଷିକ୍ତ ହେବା ପରଠାରୁ ସେ ପରିଚିତ ହୋଇଥିଲେ କିଙ୍ଗ ଏଡ଼ୱାଡ଼ (୭ମ) ନାମରେ। ସେ ମଧ୍ୟ ତାଙ୍କ ମାତାଙ୍କ ପାଦାଙ୍କ ଅନୁସରଣ କରିଥିଲେ। ତାଙ୍କ ଜୀବନରେ ଆସିଥିଲେ ଅନେକ ନାରୀ। ସେମାନେ ପୁଣି ବିବାହିତା। ଏମାନଙ୍କ ମଧ୍ୟରେ ଏକ ଘର୍ଷିତ ଉଚ୍ଚାରଣ ହେଉଛି, ଲିଲି ଲାଙ୍ଗଟ୍ରି, ଯିଏକି ଏକ ସାଧାରଣ ପରିବାରରେ ଜନ୍ମଗ୍ରହଣ କରିଥିଲେ ୧୮୫୨ରେ।

ବାଲ୍ୟକାଳରୁ ଲିଲି ଥିଲେ ଅସାଧାରଣ ସୁନ୍ଦରୀ। ରାସ୍ତାରେ ସେ ଗଲାବେଳେ ନ ଚାହିଁଲା ଲୋକ କ୍ଷଣକାଳ ରହିଯାଉଥିଲା ଏଇ ରୁପସୀଟି ପାଇଁ। ଲିଲି ବିବାହ କରିଥିଲେ ଆଙ୍ଗ୍ଟ୍ରିଙ୍କୁ, ଜଣେ ସାଧାରଣ ନିର୍ଦ୍ଧନ, ଦୁର୍ବଳ ମଣିଷକୁ। ଯିଏ ନିଜର ସ୍ତ୍ରୀ ପାଇଁ ସାମାନ୍ୟ ଅଳଙ୍କାର କିଣିବା ଅବସ୍ଥାରେ ନଥିଲେ। ବିନା ଆବରଣରେ ମଧ୍ୟ ଲିଲିର ସୌନ୍ଦର୍ଯ୍ୟ ଉକୁଟି ଉଠୁଥିଲା। ଲଣ୍ଡନରେ ସ୍ୱାମୀ ସହିତ ଶସ୍ତା ମେଫେଆର ଘରେ ରହିବାକୁ ପଡ଼ିଲା ଲିଲିକୁ। ଏଇ ସାଧାରଣ ଘର ତାକୁ ବେଶୀ ସମୟ ନିବୁଜ କୋଠରୀ ଭିତରେ ବାନ୍ଧି ରଖି ପାରିନଥିଲା।

ମନର ପ୍ରଜାପତି ତାର ଉଡ଼ିବୁଲିବାକୁ ଚାହୁଁଥିଲା। ଲଣ୍ଡନର ସମ୍ଭ୍ରାନ୍ତ ସମାଜର ଆମନ୍ତ୍ରଣକୁ ସେ ଅପେକ୍ଷା କରିଥିଲା। ପ୍ରଥମେ ଡିନର ଟେବୁଲକୁ ତାକୁ ନିମନ୍ତ୍ରଣ କରିଥିଲେ ଲର୍ଡ ରାଣ୍ଡଲଫ୍ ଚର୍ଚ୍ଚିଲଙ୍କ ସମ୍ପର୍କୀୟ ମୋରଟନ ଫ୍ରିଏନ୍। ସେତେବେଳକୁ ଲଣ୍ଡନର ସମ୍ଭ୍ରାନ୍ତ ସମାଜରେ ଲିଲିର ସୌନ୍ଦର୍ଯ୍ୟ ଏକ ବିଶେଷ ଚର୍ଚ୍ଚାର ବିଷୟ ହୋଇଯାଇଥିଲା।

ଫ୍ରିଏନ୍ ତାଙ୍କ ନରଫୋକ୍ ଘରକୁ ଲିଲିକୁ ବାରମ୍ବାର ନିମନ୍ତ୍ରଣ କରୁଥିଲେ। ଲିଲି ମଧ୍ୟ ଏହି ସୁଯୋଗର ଅପେକ୍ଷାରେ ଥିଲେ। ବିଭିନ୍ନ ପାର୍ଟିରେ ଧିରେ ଧିରେ ସେ ପ୍ରବେଶ କଲେ। ତାଙ୍କ ସୌନ୍ଦର୍ଯ୍ୟର ପାଶରୁ ମଧ୍ୟ ମୁକ୍ତି ପାଇ ନଥିଲେ ରାଣ୍ଡଲଫ୍ ଚର୍ଚ୍ଚିଲ। ହାଇଡ୍ ପାର୍କରେ ଘୋଡ଼ାଚଢ଼ା ଶିଖିବା ଅବସରରେ ଲିଲିଙ୍କ ପାଖକୁ ଆସିଥିଲେ ଅନେକ ପ୍ରଜାପତି। ଲିଲି ସେମାନଙ୍କୁ ସଦ୍‌ବ୍ୟବହାର କରିବାକୁ ପଛେଇ ନଥିଲେ। ଏମାନଙ୍କ ମଧ୍ୟରୁ କାହାକୁ ଅନ୍ତରଙ୍ଗ ପ୍ରେମିକ ଭାବେ ଗ୍ରହଣ କରିବା ପୂର୍ବରୁ ହଠାତ୍, ଲିଲିଙ୍କ ପାଖରେ ଆବିର୍ଭାବ ହେଲେ କ୍ରାଉନ୍ ପ୍ରିନ୍ସ ରୁଡ଼ଲଫ୍ (ଅଷ୍ଟ୍ରିଆ)। ଅଷ୍ଟ୍ରିଆର ରାଜା ରାଣୀ ସେମାନଙ୍କ ପୁତ୍ରର ଏ ପ୍ରକାର ସମ୍ପର୍କ ଅନୁଧ୍ୟାନ କରି ଅତିଶୀଘ୍ର ରୁଡ଼ଲଫ୍‌ଙ୍କ ବିବାହ ଘୋଷଣା କରିଦେଲେ।

ରୁଡ଼ଲଫ୍‌ଙ୍କ ଆକସ୍ମିକ ବିଦାୟ ଲିଲିଙ୍କୁ ଆଘାତ ଦେଇଥିଲା। ତଥାପି ସେ ଆଶା ଛାଡ଼ି ନଥିଲେ। ଏଥର ଲିଲିଙ୍କ ଜୀବନରେ ଆଉ ଏକ ଅଧ୍ୟାୟ Aep-Okpp1877 Oc' ୨୭ ତାରିଖ ଦିନ। ଡିନର ଟେବୁଲରେ ପାଖାପାଖି ବସିଥିଲେ ଲିଲି ଏବଂ ପ୍ରିନ୍ସ ଅଫ୍ ୱେଲସ। ଲଣ୍ଡନର ଭାବୀ ସମ୍ରାଟଙ୍କ ସହିତ

ଡିନର ଟେବୁଲରେ ବସିଥିବା ବେଳେ ଲିଲି ନିଜକୁ ଭୁଲି ଯାଇଥିଲେ। ଏ ପ୍ରକାର ବ୍ୟବସ୍ଥା ପୂର୍ବ କଳ୍ପିତ ଥିଲା ଏବଂ ଏଥିପାଇଁ ଧନ୍ୟବାଦର ପାତ୍ର ହେଉଛନ୍ତି ରାଜକୁମାରଙ୍କ ଅନ୍ତରଙ୍ଗ ବନ୍ଧୁ ସାର୍ ଆଲେନ ୟଙ୍ଗ। ପ୍ରିନ୍ସ ଅଫ୍ ୱେଲସ, ଆଲବର୍ଟ ଏହି ଅସାମାନ୍ୟ ସୁନ୍ଦରୀ ଲିଲିଙ୍କୁ ମୁହୂର୍ତ୍ତଟିଏ ବି ଛାଡ଼ିପାରୁ ନଥିଲେ। ସେ ଆଲବର୍ଟଙ୍କ ମିଷ୍ଟ୍ରେସ ଭାବେ ନିଯୁକ୍ତି ପାଇଥିଲେ। ଏଥର ଲିଲି ଲଣ୍ଡନର ସର୍ବତ୍ର ପରିଚିତ ହୋଇପଡ଼ିଲେ କେବଳ ତାଙ୍କର ସୌନ୍ଦର୍ଯ୍ୟ ପାଇଁ ଆଉ ଆଲବର୍ଟଙ୍କ ସହିତ ଥିବା ସମ୍ପର୍କ ପାଇଁ।

ପ୍ରିନ୍ସ ଅଫ୍ ୱେଲସ ଯେଉଁଆଡ଼େ ଯାଉଥିଲେ ତାଙ୍କ ସହିତ ମାସ ମାସ ଧରି ଯାଉଥିଲେ ଲିଲି। ଆଲେକ୍‌ଜାଣ୍ଡାର ରୋଡ଼ରେ ଲିଲି ଏକ ବିରାଟ ବିଲ୍‌ଡିଙ୍ଗ କ୍ରୟ କରିଥିଲେ। ବହୁ ପଛରେ ପଡ଼ିରହିଲା ମେଫେୟାର। ନୂତନ ପ୍ରାସାଦର ନାମ ରହିଥିଲା 'ଲିଟନ ହାଉସ୍'। ପ୍ରାୟତଃ ମଧ୍ୟାହ୍ନ ଭୋଜନ ପାଇଁ ପ୍ରିନ୍ସ ଏଠାକୁ ଆସୁଥିଲେ ଏବଂ ବିଳମ୍ବିତ ସନ୍ଧ୍ୟାରେ ବିଦାୟ ନେଉଥିଲେ। ଲଣ୍ଡନର ଜନସାଧାରଣ ଏ ଘଟଣା ସହିତ ଭଲ ଭାବରେ ପରିଚିତ ଥିଲେ। ଏଡ଼ୱାର୍ଡ଼ଙ୍କ ମିଷ୍ଟ୍ରେସ ହୋଇଥିବାରୁ ଲିଲିଙ୍କୁ 'ବଲ୍ ହାଉସ୍'ରେ ପ୍ରବେଶ କରିବାର ଅଧିକାର ମିଳିଥିଲା। କାରଣ ବଲ୍ ହାଉସ୍ କେବଳ ସମ୍ଭ୍ରାନ୍ତ ରାଣୀମାନେ ପ୍ରବେଶ କରିପାରୁଥିଲେ। ପ୍ରବେଶ ସମୟରେ ହାଇଡିଂରେ ଯାଉଥିଲେ ଲିଲି। ଏହି ସମୟଟିକୁ ଅପେକ୍ଷା କରି ରହୁଥିଲା ଅନେକ ଲୋଲୁପ ଚକ୍ଷୁ। ଲିଲିଙ୍କ ସାନିଧ୍ୟ ଏବଂ ସମର୍ଥନ ପାଇଁ ଲଣ୍ଡନର ଡିଉକ୍‌ମାନଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦିତା ଆରମ୍ଭ ହୋଇଯାଇଥିଲା।

ତତ୍କାଳୀନ ନାମୀ ଶିଳ୍ପୀ ମିଲେସ ମଧ୍ୟ ଲିଲିଙ୍କ ପାଶରୁ ମୁକ୍ତି ପାଇ ନଥିଲେ। ଲିଲି ବହୁଚର୍ଚ୍ଚିତ ହୋଇଥିଲେ ନିଜର ରୂପ ମାଧୁରୀ ପାଇଁ। ଏପରିକି ଲେଡି ଡାଲହାଉସି ଏବଂ ଅଷ୍ଟ୍ରିଆର ସାମ୍ରାଜ୍ଞୀ ଏଲିଜାବେଥଙ୍କୁ ସେ ଅତିକ୍ରମ କରିଯାଇଥିଲେ। ହଠାତ୍ ଏକ ଦୁଃସମୟ ଆସିଲା ଲିଲିଙ୍କ ଜୀବନରେ, ଯେଉଁଥିପାଇଁ ତାଙ୍କୁ ବହୁମୂଲ୍ୟ ଦେବାକୁ ପଡ଼ିଲା। ଲିଲିଙ୍କ କନ୍ୟା ସନ୍ତାନଟିକୁ ତାଙ୍କ ସ୍ୱାମୀ ସନ୍ଦେହ ଦୃଷ୍ଟିରେ ଦେଖିବାକୁ ଆରମ୍ଭ କଲେ। ଏହି ସନ୍ତାନଟି ତାଙ୍କ ପ୍ରେମିକ ଆର୍ଥୁ ବୋଲି ଏକ ଚାପା ଗୁଞ୍ଜରଣ ଖୁବ୍ ଶୀଘ୍ର ପ୍ରସାର ଲାଭ କଲା। ଏ ଘଟଣାରେ ଲିଲିଙ୍କ ସ୍ୱାମୀ ଡାଇଭର୍ସ ପର୍ଯ୍ୟନ୍ତ ଆଗେଇ ଗଲେ। ଘଟଣା ଏପରି ହେଲା ଯେ, ପ୍ରିନ୍ସ ଅଫ୍ ୱେଲସ ନିଜକୁ ଲିଲିଠାରୁ ଦୂରେଇ ରଖିଲେ। ସମ୍ଭ୍ରାନ୍ତ

ସମାଜରେ ଅନେକ ଲିଲିଙ୍କୁ ନାକ ଟେକିଲେ। ଖୁବ୍ ଭାଙ୍ଗି ପଡ଼ିଥିଲେ, କିନ୍ତୁ ହତୋତ୍ସାହ ହୋଇ ନଥିଲେ।

ଏଥର ଆରମ୍ଭ ହେଲା, ଲିଲିଙ୍କର ଆଉ ଏକ ଅଧ୍ୟାୟ ସେ 'ଚାରିଟି ସୋ' କରିବାକୁ ଲାଗିଲେ, ଯାହା ଖୁବ୍ ସଫଳ ହୋଇଥିଲା। ପରେ ପରେ ସେ ଥିଏଟର କମ୍ପାନୀରେ ଯୋଗ ଦେଲେ। ହେମାର୍କେଟ ଥିଏଟରରେ କମେଡ଼ି ଆବାରସ ଚାଲିଥିବା ବେଳେ, ଏହାକୁ ଅନ୍ୟମାନଙ୍କ ସହିତ ଉପଭୋଗ କରିବାକୁ ଆସିଥିଲେ ପ୍ରିନ୍ସ ଅଫ୍ ୱେଲସ। ନାଟକ ଶେଷରେ ଦର୍ଶକମାନେ ଲିଲିଙ୍କର ପ୍ରଶଂସାରେ ବିହ୍ୱଳ ହୋଇ ଉଠିଥିଲେ। ନିଜେ ଆଲବର୍ଟ ମଧ୍ୟ ପୁଷ୍ପଗୁଚ୍ଛ ଦେଇ ଲିଲିଙ୍କୁ ଅଭିନନ୍ଦନ ଜଣାଇଥିଲେ। କ୍ରମଶଃ ପ୍ରିନ୍ସ ଏବଂ ଲିଲି ପୁଣି ନିକଟତର ହେବାକୁ ଲାଗିଲେ। ଥିଏଟର କମ୍ପାନୀ ଆମେରିକାରେ ଖୁବ୍ ନାଁ କରି ଫେରିଲା। ସାଥିରେ ଆଣିଥିଲେ ବହୁ ମୂଲ୍ୟବାନ ଉପହାର ଏବଂ ଧନରତ୍ନ, ଯାହା ପ୍ରିନ୍ସ ତାଙ୍କୁ କେବେ ବି ଦେଇପାରି ନଥାନ୍ତେ।

ଏଥର କିନ୍ତୁ ଲିଲି ଚାହୁଁଥିଲେ ପ୍ରିନ୍ସଙ୍କ ସାନିଧ୍ୟ। ଏଡ଼ୱାଡ଼ଙ୍କ ଭୀରୁତାରେ ସେ ନିଜକୁ ସଂକୁଚିତ ମନେ କଲେ। ଲଣ୍ଡନର ସମ୍ଭ୍ରାନ୍ତ ସମାଜ ଏବଂ ପ୍ରିନ୍ସଙ୍କ ଉପରେ ପ୍ରତିଶୋଧ ନେବାପାଇଁ ସେ ବିବାହ କଲେ ସାର୍ ହୁଗୋଡ଼ି ବାଥେଙ୍କୁ। ୧୯୦୧ରେ ପ୍ରିନ୍ସ ସିଂହାସନ ଆରୋହଣ କଲେ। ଏଥର ମଧ୍ୟ ଏଡ଼ୱାଡ଼, ଏହି ରୂପସୀଙ୍କ ପ୍ରଣୟ ପ୍ରାର୍ଥୀ ହେଲେ। ହେଲେ ରାଜତନ୍ତ୍ର ତଳେ ଲୁଚି ରହିଥିବା ପ୍ରତାରଣାକୁ ଲିଲି ଭଲ ଭାବେ ଚିହ୍ନିଥିଲେ। ଏଡ଼ୱାଡ଼ଙ୍କଠାରୁ ନିଜକୁ ଦୂରେଇ ରଖିବା ପାଇଁ ଲିଲି ମିଶାଇ ଦେଇଥିଲେ ନିଜକୁ ସାଧାରଣ ଜନତାଙ୍କ ସହିତ, ଥିଏଟର ସହିତ। ୨୭ ବର୍ଷ ବୟସରେ ୧୯୨୯ରେ ଏହି ରୂପସୀ ଜଣକ ମୃତ୍ୟୁବରଣ କରିଥିଲେ ସତ, କିନ୍ତୁ ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କ ହୃଦୟର ନିଭୃତ କୋଣରେ ପ୍ରିନ୍ସଙ୍କ ପାଇଁ ଏକ ସ୍ୱତନ୍ତ୍ର ସ୍ଥାନ ରହିଯାଇଥିଲା।

